ଲେଖକ—

**ଭାସ୍କର ସାହୁ**, ଶିକ୍ଷକ

ପଲ୍ଲୀପଦ୍ରା ବଙ୍ଗୀପେଠ ଅଞ୍ଚଳ ପରିଷଦ

ପଲ୍ଲୀପଦ୍ର, ଗଞ୍ଜାମ

ପ୍ରକାଶିକା—

**ସୁଲୋଚନା ସାହୁ**

ମୁଦ୍ରଣ—

୧୯୮୪, ବ୍ୟାସ ପୂର୍ଣ୍ଣିମା

ମୁଦ୍ରାକର—

**ସ୍ୱାଧୀନ ପ୍ରେସ୍,**

ବ୍ରହ୍ମପୁର-୧

**ମୂଲ୍ୟ—ଟ ୨-୫୦ ପଇସା**

# ଉତ୍ସର୍ଗ

ବୋଉର ଅକାଳ ବିୟୋଗରେ
ଭାଙ୍ଗିପଡ଼ିବା ଦୂରେ ଥାଉ
ନଇଁ ବି ନ ଯାଇ,
ଜୀବନର ଯାତ୍ରାପଥରେ
ଦିଗହରା, ବାଟବଣା ନହୋଇ,
ଅସୀମ ଧୈର୍ଯ୍ୟ, ସାହସ ଓ ତ୍ୟାଗର
ଜ୍ୱଳନ୍ତ ପରାକାଷ୍ଠା ଦେଖାଇ,
ନିଃସ୍ୱ ସାଜିଗଲେ ବି
ଆମକୁ ସର୍ବସ୍ୱ ମନେ କରିବାରେ
ଯାହାଙ୍କ ମାନସପଟ୍ଟରେ
ଲେଶ ମାତ୍ର ଶୋଚନା ଅନୁଶୋଚନାର
ଅବକାଶ ନଥିଲା;
ସେଇ ମୋର ପରମ ପୂଜ୍ୟପାଦ
ପିତାଙ୍କର ଶ୍ରୀଚରଣ ତଳେ
ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ଆଶୀର୍ବାଦ ଭିକ୍ଷୁ ହୋଇ
ଭକ୍ତିର ଅର୍ଘ୍ୟ ସ୍ୱରୂପ
ଏଇ ମୋର ସାମାନ୍ୟ ଟିକକ
'ଆତ୍ମଲିପି' ଅର୍ପଣ କଲି ।

ଅଧମ ତନୟ
**ଭାସ୍କର**

# ପୂର୍ବାଭାଷ

'ଆତ୍ମଲିପି' ମୋର ଦ୍ୱିତୀୟ ଅର୍ଘ୍ୟ ଆଜି ଜନନେତଙ୍କୁ ଆଣିବାର ସୌଭାଗ୍ୟ ଲାଭ କରୁଛି । 'ଆତ୍ମଲିପି' ତା'ର ନାମକରଣରୁ ବିଷୟବସ୍ତୁ ଅବତାରଣାରେ ସ୍ୱତଃ ସ୍ପଷ୍ଟ ରୂପାୟିତ ହୋଇଥିଲେ ବି ତା'ର ଲେଖକ ସ୍ୱଭାବରେ ଅତି ସାମାନ୍ୟ ପୂର୍ବଭାଷ ଅସମୀଚୀନ ହେବନି—ମନେ କଲି ।

ନିକଟ ଅତୀତରେ "ପ୍ରାଥମିକ ଶିକ୍ଷକର ଆତ୍ମକଥା" ପ୍ରସଙ୍ଗରେ ଗୋଟିଏ ଶିକ୍ଷକ ସମାବେଶରେ ପ୍ରବନ୍ଧ ରୂପରେ ଏହା ପଠିତ ହୁଏ । ପୁସ୍ତିକା ଆକାରରେ ଛାପିଦେବା ପାଇଁ ସହୃଦୟ ପୂଜ୍ୟ ଶିକ୍ଷକ ଶିକ୍ଷୟିତ୍ରୀ ଭାଇଭଉଣୀମାନେ ଯେତେବେଳେ ସନ୍ତ୍ରିଷ୍ଟ ଆଗ୍ରହ ପ୍ରକାଶ କରନ୍ତେ ଏହାକୁ ମୋର ସୀମିତ ସାମର୍ଥ୍ୟ ଭିତରେ ଆବରଣଗତ କଳା ଓ ରୁଚି ଅଭିରୁଚିର ଭାଳେ ଭାଳେ ସଜେଇ ଦେଇ ନାମକରଣକୁ ଆଜି ଟିକିଏ ପରିବର୍ତ୍ତନ କରି ଥୋଇ ଦେଇଛି ମାତ୍ର ।

ପରିବେଷ୍ଟନୀର ଫେର ଭିତରେ ଜୀବନର ଗତିପଥ ବାଛି ନେଇ, ଆନୁଷଙ୍ଗିକତାକୁ ବାଦ ନଦେଇ, ବାସ୍ତବତାକୁ ନ ଏଡ଼େଇ, ନାନା ଘାତ ପ୍ରତିଘାତର କଣ୍ଟାଳତା ଏଡ଼େଇ, ଆଗକୁ ଆଗକୁ ପାଦ ବଢ଼େଇ ଯେତେବେଳେ ପାଛା ଦେଖିଛି ଆଜି ଅନେକ ନାଭେଇଛି—ତା'ର ଭିତରୁ ଗୋଟି ଗୋଟି ସାଉଁଟି ଆଣି ଗାନ୍ଥି ତୋଳିଛି ଏଇ ମୋର 'ଆତ୍ମଲିପି'—ମୁଁ ଯେତେଟା ସେତେଟା ବୋଲି ବିଶେଷରେ କହିବାକୁ ଯାଇ ।

ମୋର ପୂଜ୍ୟ ପ୍ରଧାନ ଶିକ୍ଷକ ଶ୍ରୀ ଯଦୁନାଥ ମିଶ୍ର ଓ ଶିକ୍ଷକ ବନ୍ଧୁ ଶ୍ରୀ ହରିବନ୍ଧୁ ପ୍ରଧାନ ମୋର ଏଇ ପାଣ୍ଡୁଲିପି ଆମୂଳଚୂଳ

ପାଠ କରି ସୁବିଧାନ୍ତୁ ଅଭିମତ ପ୍ରଦାନ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ସର୍ବଶ୍ରୀ ରାମକୃଷ୍ଣ ସାହୁ, ଶିକ୍ଷକ ବନ୍ଧୁ ଭଗବାନ ତ୍ରିପାଠୀ ଓ ମୁରଲୀଧର ପଣ୍ଡାଙ୍କର ପାଣ୍ଡୁଲିପି ପ୍ରକାଶନରେ ଅକ୍ଳାନ୍ତ ଶ୍ରମ, ସହଯୋଗ ମୋର ଅଭୁଲା ।

ପରମପୂଜ୍ୟ ଅଗ୍ରଜ ଶ୍ରୀ ବନମାଳୀ ସାହୁ, ଏମ୍. ଏ. ଇ. ଏ ପାଣ୍ଡୁଲିପି ପ୍ରକାଶନର ସକଳ ବ୍ୟୟ ଭାର ବହନ କରିଥିବାରୁ ତାଙ୍କର ଏ ଅପାର କୃପା ପାଇଁ ଏ ଅକିଞ୍ଚନ ତାଙ୍କ ନିକଟରେ ଚିର ଋଣୀ ବୋଲିହିଁ କହି ବାଧିତ ହେବା ଛଡ଼ା ତାର ଗତ୍ୟନ୍ତର ନାହିଁ । ପାର୍ଥିବ ଭୋଗବିଳାସରେ ମୋହାବିଷ୍ଟ ନହୋଇ, ବହୁଳ ତ୍ୟାଗ ସ୍ୱୀକାର କରି ପାଣ୍ଡୁଲିପିର ପ୍ରକାଶିକା ଭାବରେ ମୋର ସହଧର୍ମିଣୀ ଶ୍ରୀମତୀ ସୁଲୋଚନା ସାହୁଙ୍କର ଅତ୍ୟନ୍ତ ଉତ୍ସାହ ଓ ପ୍ରେରଣା ପାଇଁ ତାଙ୍କୁ ମୋର ଯଥା ସମ୍ମାନ ।

ବିଶେଷରେ 'ସ୍ୱାଧୀନ ପ୍ରେସ୍' ପରିଚାଳକ ମହୋଦୟ ପାଣ୍ଡୁଲିପି ପ୍ରକାଶନରେ ଆମୂଳଚୂଳ ପ୍ରୁଫ୍ ସଂଶୋଧନ ପୂର୍ବକ ଯେଉଁଭଳି ନିଷ୍ଠା, ଉତ୍ସାହ ପ୍ରଦର୍ଶନ କରିଛନ୍ତି ସେଥିପାଇଁ ତାଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ପ୍ରିୟ ପାଠକ ପାଠିକା ମହଲରେ କଞ୍ଚିତଆହ୍ଲାଦ ଦାନରେ 'ଆତ୍ମଲିପି' ମୋର ଆଦୃତ ହେଲେ ଶ୍ରମ ସାର୍ଥକ ମନେ କରିବି ।

ଇତି
ବିନୀତ ଲେଖକ
**ଭାସ୍କର ସାହୁ**

ବ୍ୟାସ ପୂର୍ଣ୍ଣିମା
ତା ୨-୭-୮୫

# ଅଭିମତ

ଜନନୀ ଓ ଜନ୍ମଭୂମିର ନୈସର୍ଗିକ ସେବା-ସଂସ୍କାରରେ ଅନ୍ତର୍ଭୂତ ହୋଇ ବଂଶ ଓ ମାଟିର ଗୌରବ ରକ୍ଷା କରିବା ପାଇଁ ତରୁଣ ଓ ଚୈତନ୍ୟପ୍ରବଣ କବି, ବନ୍ଧୁ ଭାସ୍କର ସାହୁ, ନିଜର ଅମ୍ଳାନ ବ୍ୟକ୍ତିତ୍ୱର ପରିଚୟ ଦେଇ ଆସିଛନ୍ତି । ବାଲ୍ୟାବସ୍ଥାରୁ ମାତୃ-ବିୟୋଗ ଓ ଆର୍ଥିକ ଅସ୍ୱଚ୍ଛଳତା ସତ୍ତ୍ୱେ ଓଳଆରୁ ଗଢ଼ା ହୋଇ ସେ ଲକ୍ଷ୍ୟପଥରେ ଅଟଳ ହୋଇ ରହିଛନ୍ତି । 'ଆତ୍ମଲିପି' ଜରିଆରେ ନିଜର ଅକୃତ୍ରିମ ଅନୁଭୂତି ପ୍ରକାଶ କରିବାକୁ ଯାଇ ସେ ସାଂପ୍ରତିକ ସାମାଜିକ ଅବସ୍ଥାର ପ୍ରାଞ୍ଜଳ ଚିତ୍ର ଆଙ୍କି ଯାଇଛନ୍ତି । ନିଜର ସାଥି-ସ୍ୱଜନଙ୍କ ଉଦାର ସମ୍ବେଦନାକୁ ଚିତ୍ରଣ କରିବା ସଙ୍ଗେ ସଙ୍ଗେ ସେ କେତେକ ସ୍ଥଳରେ ସମାଜର ବିକୃତ ବର୍ଗର ଓ ଦୁରାଚରଣକୁ ପ୍ରକଟ କରିବାରେ କୁଣ୍ଠାବୋଧ କରି ନାହାନ୍ତି । ଏହା ଯେ ତାଙ୍କର ଆତ୍ମନିର୍ଭରତାଜନିତ ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ପରିଚୟ ଦିଏ—ଏ'କଥା ଅବିସମ୍ବାଦିତ ସତ୍ୟ । ଜନ୍ମଭୂମିର ସଭ୍ୟତା ପରିପୂର୍ଣ୍ଣ ଗୌରବାବହ ଦିଗଗୁଡ଼ିକୁ ଲୋକଲୋଚନକୁ ଆଣିବା ଦିଗରେ କବି ନିଜର ଲେଖନୀକୁ ଖୁବ୍ ଶାଣି କରିଛନ୍ତି । ସ୍ଥାନେ ସ୍ଥାନେ ପ୍ରକୃତି-ବର୍ଣ୍ଣନା ଓ ସ୍ଥାନସ୍ଥ ପ୍ରକୃତି ପ୍ରତି ନିଜର ଓତପ୍ରୋତ ମନୋଭାବ, ମାତୃଭୂମି ଓ ତାହାର ଗୌରବ ପ୍ରତିପାଦନ ଦିଗରେ ସ୍ୱାଭାବିକ ଭାବପ୍ରକାଶ କବିଙ୍କର ସ୍ୱୟଂ ସମ୍ପୂର୍ଣ୍ଣ ଆତ୍ମ-ପରିଚୟ ପ୍ରଦାନ କରେ ।

ସମାଜର ବଳିଷ୍ଠ କଳେବରକୁ ଖର୍ବ କରୁଥିବା କଳଙ୍କକୁ ଦୂରେଇ ଦେବାର ସୁମହତ ଚିନ୍ତା 'ଆତ୍ମଲିପି' ମାଧ୍ୟମରେ ପାଠକ-ମାନଙ୍କୁ ଅବଶ୍ୟ ଆତ୍ମବିଶ୍ଳେଷଣ ଓ ଆତ୍ମନିର୍ମାଣର ପ୍ରେରଣା ଦେବ ।

**ଯଦୁନାଥ ମିଶ୍ର**
ପ୍ରଧାନ ଶିକ୍ଷକ
ପଲସର ଉଚ୍ଚ ପ୍ରାଥମିକ ବାଳକ ବିଦ୍ୟାଳୟ

# 'ଆତ୍ମଲିପି' ପାଇଁ ପଦେ

ସବୁ ଗଛରେ ଫୁଲ ଫୁଟେ, ସବୁ ଗଛରେ ଫଳ ଆସେ କିନ୍ତୁ ଯେଉଁ ଗଛର ଚତୁର୍ଦିଗରେ ପ୍ରଜାପତି, ମଧୁମାଛି, ଭ୍ରମର ସଞ୍ଚରଣ କରନ୍ତି ଯେଉଁ ଗଛଟିର ଫୁଲ ସବୁ ବାସନାଯୁକ୍ତ ଏବଂ ସେହି ଗଛଟି ସମସ୍ତଙ୍କ କ୍ଷୁଧା, ତୃଷା ହରଣ କରେ ତାହାର ଫଳ ସବୁ ରସାଳ ଏବଂ ସୁସ୍ୱାଦୁ । ଅତ୍ୟାଧୁନିକ ବିକାଶ-ବୈଭବକୁ ଏଡ଼ାଇ ଜନ୍ମମାଟିର ଆକର୍ଷଣରେ ସଦାଳାପୀ ଭାସ୍କର ଭାଇଙ୍କ 'ଆତ୍ମଲିପି' ମଧ୍ୟରେ ଶିକ୍ଷକ ଜୀବନର ଚେତନ, ଲୁଣ ସାଂସାରିକ ଚଳଣି, ଜୀବିକା ଦୃଷ୍ଟି ସାଗ୍ରହ ପ୍ରେମ ଓ ତାହାର ଲକ୍ଷ୍ୟ ସୁସ୍ପଷ୍ଟ । ଅନ୍ତରର ନିଚ୍ଛକ ଅନୁଭୂତିକୁ ପରିବେଶର ବର୍ଣ୍ଣନା ପାଠକରେ ସୁଖପାଠ୍ୟ ସୁବୋଧ କରି ଆଙ୍କିବାରେ ବୟସ କିମ୍ବା ପରିପକ୍ୱତା ଆବଶ୍ୟକ ହୋଇ ନଥାଏ । ପାରିବାରିକ ଶତ ବିକ୍ଷେପଣକୁ ସହ୍ୟ କରି, ଶୈଶବରୁ ମାତୃ ସୁଖରୁ ବଞ୍ଚିତ ଥାଇ ସୁଦ୍ଧା ପିତୃ ସେବାକୁ କାୟ-ମନୋବାକ୍ୟରେ ପରମ ବ୍ରତ ରୂପେ ପାଳନ କରି ଆସିଛନ୍ତି ତଥାପି ତାଙ୍କର ଲେଖନୀ ସୃଜନାରେ ସେସବୁ ଭୁଲି ପରମ ଆଶ୍ୱସ୍ତି ଲାଭ କରୁଛନ୍ତି ।

ସେହି ଅଦୃଶ୍ୟ ଶକ୍ତି ପରମେଶ୍ୱରଙ୍କ ନିକଟରେ ବିନମ୍ର ପ୍ରାର୍ଥନା, ତାଙ୍କର ଏହି ଲେଖନୀ ସୃଜନା ଅବାରିତ ରହୁ ଏବଂ ଅଗଣିତ ପାଠକ, ପାଠିକାମାନଙ୍କର ସନ୍ତୋଷଭାଜନ ହେଉ ।

**ହରିବନ୍ଧୁ ପ୍ରଧାନ**
୨୨-୧୨-୮୪



ସ୍ୱର୍ଗତ ଲେଖକ



ଶ୍ରୀମତୀ ପ୍ରକାଶିକା

ମାନନୀୟ ସଭାପତି ମହୋଦୟ,
ଶିକ୍ଷକ ଶିକ୍ଷିକା ଉଦାର ହୃଦୟ ।

ଶିରୋନାମା ଗୋଟି ଆଜ ପ୍ରବନ୍ଧର,
"ଅ.ମୃତନ୍ତା ପ୍ରାଥମିକ ଶିକ୍ଷକର ।"

ମାଗୁଣି ମୋହର ଏତକ ମାତ୍ର,
ସଶ୍ରଦ୍ଧେ ସ୍ୱସ୍ଥାନେ ଆସ୍ଥାନ ପୂର୍ବକ ।

ଧୈର୍ଯ୍ୟ ଧରି ଟିକେ ଶୁଣିବା ହୋଇବେ,
ପୂର୍ବବତ୍ ସ୍ନେହ ଶ୍ରଦ୍ଧା ସମ୍ପାଦିବେ ।

ଜୟ ଗଜାନନ ବିଘ୍ନ ବିନାଶକ,
ବିବେକ ବିନୟ ବୁଦ୍ଧି ପ୍ରଦାୟକ ।

ବ୍ୟାସ ପୁରାଣର ଲେଖଣୀ ଚାଳକ,
ସର୍ବ କାର୍ଯ୍ୟ ସିଦ୍ଧି ପ୍ରଦ ବିନାୟକ ।

ଅକ୍ଷତ, ପୂଜନ ଧ୍ୟାନ ଏ ଅଧମ,
ପୂଜାରେ ଦିଅ ମୋ' ବଳ ଅନୁପମ ।

ଯା' କୃପା କଣିକେ ଅଜ୍ଞାନର ଜ୍ଞାନ,
ଯା' କୃପା ଅନ୍ଧର ନୟନ ସମାନ ।

ଯା' କୃପାରେ ନର ଜଗତ ବିଜେତା,
ରାଜାର ସମ୍ମାନ କୁବେରରୁ ଜେତା ।

କବିର ଜନନୀ ବାଣୀ ସରସ୍ୱତୀ,
କଣ୍ଠେ ମୋର ବସୁ ବାଣୀ ଶ୍ରୀଭାରତୀ ।

ପଦେ ପଦେ ମୋର ଥିବୁ ତୁ ପ୍ରସନ୍ନା,
ଛନ୍ଦ ଦେଲେ ଝୁଣ୍ଟି ନ ହୋଇ ବିମନା ।

ଜୟ କବିକୁଳ କବିତ୍ୱ ବିଭୂତି—
ନେଇ ଫୁଟାଇଲ ସାରସ୍ୱତ କୃତି ।

ଗୁରୁଜନ ପଦେ ବନ୍ଦେ ସବିନୟ,
ମାଗେ ମୁଁ ଆଶିଷ ଅଧମ ତନୟ ।

ଯେଉଁ ପଥେ ଗମି କ୍ଷେମ ସାରସ୍ୱତ,
ଅକ୍ଷୟ ଶାଶ୍ୱତ ପୂର୍ଣ୍ଣ ମନୋରଥ ।

ସେହି ପଥ ଧୂଳି-ଚନ୍ଦନ ଲଲାଟେ—
ମାଖି ଗୁଳ ତୂଳୀ ଯିବ ମୁଁ ଉଚ୍ଚାଟେ ।

ପାଠକ ପାଠିକା ରସ ଗୁଣଗ୍ରାହୀ,
ଲେଖାରେ ଉତ୍ସାହ ପ୍ରେରଣା ମୋ ପାଇଁ ।

ସୁଜ୍ଞ ବିଜ୍ଞଙ୍କର ଆଶିଷ ସମ୍ବଳ,
ତୂଳୀ ମୋର କରୁ ରଞ୍ଜନ ସବଳ ।

ଭାବନା-ପଥରୁ ନ ଗୋଟାଇ କଣ୍ଟି,
ସେ ତୂଳୀରେ ନେଇ ରୂପ ଦେବା ଇଚ୍ଛି ।

ଯାହା ଅଙ୍ଗୀକାର ଅବା 'ଆତ୍ମଲିପି',
ଶିଳ୍ପର ଗ୍ରାହକେ ଦେବି ତାକୁ ଟିପି ।

ଗଞ୍ଜାମ ମଣ୍ଡନ ଅଠଗଡ଼ ସ୍ଥିତ,
ଫୁଲସରା ଫୁଲ ଉଦ୍ୟାନ ମଣ୍ଡିତ ।

ବଜ ସୀମନ୍ତମ କେଳ କୁନ୍ତଳରେ,
ମଣ୍ଡି ହେବା ପାଇଁ ଖର ସମ୍ଭାରରେ—

ଯାଏ ବୋଲି କମ୍ବଦନ୍ତୀ ଶ୍ରୁତ ତୋ'ର,
'ଫୁଲସରା' ପ୍ରିୟ ଜନ୍ମମାଟି ମୋର ।

ବନ୍ଧ, ଜଳାଶୟ, ମନ୍ଦର, ଆଳୟ,
ଗାଏ କୀର୍ତ୍ତି ଯା'ର ଅକ୍ଷତ ଅକ୍ଷୟ ।

ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ କଳାରେ,
ଧର୍ମ, କର୍ମ, ଜ୍ଞାନ, ଯଜ୍ଞ ମହିମାରେ ।

ଧନ-ଜନ-ଗୋପ-ଲକ୍ଷ୍ମୀଙ୍କ ସଦନ,
'ଫୁଲସରା' ମୋର ସରଗ ଭୁବନ ।

କଥା କେତକୀର କୁଞ୍ଜବନ ଛୁଆଁ,
ଅଙ୍କେ ଯା' ବାହିତ ଧନେଶ, ବାଘୁଆ ।

ଗନ୍ଧ ନାଗେଶ୍ୱର ମଞ୍ଜୁ କୁଞ୍ଜ ବୀଥି,
ନାନା ଜାତି ଫୁଲ ଫୁଟେ ଯହିଁ ନିତି ।

ଶ୍ୟାମଳ ଉତ୍ସଙ୍ଗେ ଉଚ୍ଛୁଳେ ଯା' ମାଟି,
ସେ ଫୁଲସରା ମୋ' ପ୍ରିୟ ଜନ୍ମମାଟି ।

ନିତ୍ୟ ଯା' ରଚନ୍ତି କାନ୍ତ ପଦାବଳୀ,
ବିହଗ ବିହଗୀ କୂଜନ କାକଳି ।

ସମୀର ତରଙ୍ଗେ ମିଳାଇ ସେ ତାନ,
ଯା' ମାଟିର ନିତି କଲେ ଜୟଗାନ ।

ଖେଳାଇ ଝଙ୍କାର ଗଗନେ ପବନେ,
ନାଚଇ ଗୌରବ ଗାରିମା ଗୁଞ୍ଜନେ ।
ଏ ମାଟିରେ ମୋର ପ୍ରାଣପିଣ୍ଡ ପୂତ,
ଶ୍ୟାମଳ ବଂଶ ବିଖ୍ୟାତ, ସମ୍ଭୂତ ।
କୃଷ୍ଣ ଶ୍ୟାମଳ ପ୍ରାତଃ ସ୍ମରଣୀୟ,
ତାଙ୍କ ଭଣଜା ମୋ' ପିତା ପୂଜନୀୟ ।
ମୁଁ ତାଙ୍କ ଅଧମ ତୃତୀୟ ସନ୍ତାନ,
ଥିଲି ନାବାଳକ ଅଜ୍ଞ ଶିଶୁ ପ୍ରାଣ ।
ପ୍ରାଥମିକ ଶିକ୍ଷା କରି ସମାପନ,
ଗୋପବନ୍ଧୁ ସ୍କୁଲେ କଲି ଅଧ୍ୟୟନ ।
ଶେଷ ନ ହେଉଣୁ ଷଷ୍ଠ ଶ୍ରେଣୀ ମୋର,
ପଡ଼ିଲି ଚଡ଼କ ଭୟଙ୍କର ଘୋର ।
ଚାଲିଗଲେ ମୋର ମାତା ମହୀୟସୀ,
ଭାବିଲି ଦଇବ କି ନିଠୁର ହସି ।
ଦିବସ-ସଳିତା ଲିଭିଗଲି ପରେ,
ସନ୍ଧ୍ୟା ନଇଁଛି ଏ ଧରଣୀ ପରେ ।
ଧୂଳି ଖେଳ ମୋର ସରିଯାଏ ଦିନା,
କେ ଡାକ କରିବ ଯେଣା ବୋଉ ବିନା ।
ଆ ଆ ଧନମାନ ବେଳତ ହେଲଣି,
ନେଇତ ଯାଇଛୁ ବିଦାୟ ମେଲଣି ।
ଶିଶୁ ମନ ମୋର କାହୁଁ ବା ଜାଣିବ,
କାହିଲେ ବା କିଏ କହି ପ୍ରବୋଧିବ ?

ନନାଙ୍କ ଆଦର-ଯତ୍ନେ ହେଲି ପାଳି,
ପ୍ରବୋଧନା ଛଳେ କେତେ ନିଉଛୁଳି ।

ମନ ତୋଷ ପାଇଁ ଯେତେ ଯା' କହିଲେ,
ଦୋଷା ଦୋଷକୁ ସେ କିଛି ନ ଧରିଲେ ।

ନନାଙ୍କ ସୋହାଗ ଦେହେ ହେଲୁ ଗୋଳି,
ସରଗରୁ ପାରିଜାତ ଦେଲେ ତୋଳି ।

ସେ ସରଗ ତାଙ୍କ ମହତ ହୃଦୟ,
ପ୍ରୀତି ପଦେ ଦେଲେ ବାଣୀ ବରାଭୟ ।

ସେହି ପାରିଜାତ ଆଦର ସୋହାଗ,
ଆମ ପାଇଁ ତାଙ୍କ ସେବା ଅନୁରାଗ ।

ପ୍ରୀତି ପଦେ ଦେଲେ ବାଣୀ ଆଶ୍ୱାସନା,
"ନ ହୁଅ କଦାଚ ଭୀତ ଉନ୍ମନା ।

ପାଠ ପଢ଼ା କର ଜୀବନର ବ୍ରତ,
ଜାଗ ଅବିରତ ହୁଅ କର୍ମରତ ।

ଧନ ମାନେ ମନେ କ୍ଷୋଭ ନ ବହିବ,
ଯାହା ଯେତେବେଳେ ଲୋଡ଼ା ପଡ଼ୁଥିବ—

ସେ ଅନୁକ୍ରମରେ ନ ହେବ କୁଣ୍ଠିତ,
ମାତୃହୀନ ବୋଲି ନ ହେବ ବଞ୍ଚିତ ।

ଆସୁ ପଛେ ଯେତେ ଝଡ଼, ଝଞ୍ଜା, ବାତ,
ପାତିବନି କେବେ କାହାଠାରେ ହାତ ।

ହୀନମାନ କଲେ କିଏ ତୁମ ଶତ୍ରୁ,
ହେବ ଆନ୍ଦୋଳିତ କ୍ଷୋଭ ସ୍ୱଦଳିତ ।

ଚତ୍ତ ରକ୍ଷି ସ୍କୁଲ ବନ୍ଧୁ ଶ୍ରୀଚୟରେ,
ସହାୟ ଥିବ ମୁଁ ସବୁ ସମୟରେ ।”
ସେଇ ଅନୁକମ୍ପା ଆଶୀର୍ବାଦ ଫଳ,
ଶେଷ ହେଲା ମୋର ଶିକ୍ଷା ହାଇସ୍କୁଲ ।
ବଢ଼ାଣ୍ଡ ମଧୁସୂଦନପୁରେ ସ୍ଥିତ,
ଏମ. ଇ. ସ୍କୁଲ ଥିବା ଥିଲି ମୁଁ ବିଦିତ ।
ପ୍ରଧାନ ଶିକ୍ଷକ ପଦବୀ ମହାନ,
ତହିଁ ଯଦୁନାଥ ମିଶ୍ର ପୁଣ୍ୟପ୍ରାଣ ।
ପ୍ରିୟ ସହକର୍ମୀ କାଳୀବାବୁ ଜଣେ,
ଲଭିଲି ସାନିଧ୍ୟ କି ଆନନ୍ଦ ମନେ !
ତାଙ୍କ ଅନୁକମ୍ପା ଦେଲା ମୋତେ ଥାନ,
ନିଜକୁ ମଣିଲି ମୁହିଁ ଭାଗ୍ୟବାନ ।
ଊଣେଇଶ ସତଷଠି ଥିଲା ସାଲ,
ପରମ ଆହ୍ଲାଦ ଲଭେ ବର୍ଷେ କାଳ ।
ଏଇଠାରୁ ଯାଇ ଶିକ୍ଷକତା କରେ,
ଉଙ୍କାପଡ଼ା ଗ୍ରାମ ଏମ୍. ଇ. ସ୍କୁଲରେ ।
ସ୍ୱଳ୍ପକାଳ ପାଇଁ କଲି ଅବସ୍ଥାନ,
କରୁଣା-କଟାକ୍ଷ କରୁଣା ନିଧାନ ।
ଡ଼ାକନ୍ତେ ଅଇଲା ତାଲିମ ନିର୍ଦ୍ଦେଶ,
ଛେଡ଼ା କଲି ଯାଇ କମିଟି ଆଦେଶ ।
ନେବ ମୁଁ ତାଲିମ ହିବ ଖଲିକୋଟ,
ମୋ' ହିବାକୁ କଲୁ କଲେ ଆକଟ ।

ସେ ଆକଟଙ୍କୁ ମୁଁ କରିଲି ଅପେକ୍ଷା,
ମୋ' ଯିବା ପରେ ସେ କ କରିଥିବେକା ।

ଖଲିକୋଟ ଅଷ୍ଟଦୁର୍ଗ ଅଧିପତି—
ରାମଚନ୍ଦ୍ର ମର୍ଦ୍ଦରାଜ ରାଜବାଟୀ ।

ଶୁଭ ସାଜ କରେ ତାଲିମ ଗ୍ରହଣ,
ପ୍ରଧାନ ଶିକ୍ଷକ ପାବନ ପରମ—

ଶ୍ରୀ ହରିନାଥ ଚଉଧୁରୀ ମହାପ୍ରାଣ,
ମଣିଲି ଅମୃତ ତାଙ୍କ ସନ୍ନିଧାନ ।

ଦୁଃଖ ଶୋକ କଷ୍ଟ ନ ଜାଣିଲି କାହିଁ,
ସତୁର ସାଲଟି ଥିଲି ମୋହ ଟାଇଁ ।

ଏକେ ଦ୍ୱନ୍ଦ୍ୱମାନ ସମସ୍ତ କଟାଳ,
ରାଜଧାନୀ ହେରେ ଗଲି ଅବସ୍ଥର ।

ବି. ଜେ. ବି. କଲେଜ କଳା ବିଭାଗରେ,
ପ୍ରବେଶିଲି ହିନ୍ଦୀ ତାଲିମ କେନ୍ଦ୍ରରେ ।

ଜନନୀ ବିଚ୍ଛେଦ, ଜନ୍ମମାଟି ଦୂରେ,
ମଣିଲି ବନ୍ଦୀ ମୁଁ କବା ବନ୍ଦୀପୁରେ ।

ଯହିଁ ଗଲେ ତହିଁ ଦୃଷ୍ଟି ପଥ ଛୁଇଁ,
ନାଚଲି ତରଙ୍ଗେ ପ୍ରିୟ ଜନ୍ମଭୂଇଁ ।

ମେଘାପଦରର ଆମ୍ରବନ ଘଟା,
ଧନେଶ୍ୱ ନଈର ଧାବମାନ ଛଟା ।

ବିହଗ ବିହଗୀ କାକଳକା ମାଳ,
ସାଇ ଭାଇ ସାଙ୍ଗ ସାଥୀ କଉତୁକ—

ଡାକୁଛନ୍ତି ଅବା ଆସ ଭାଇ ଆସ,
ଝଲ ଲକ୍ଷ୍ମୀ ଶୋଭା ସ୍ଫୁରୁ ଶ୍ୟାମ ଶସ୍ୟ ।

କି କରୁଥିବେ ମୋ' ବୃଦ୍ଧ ପିତା ଘରେ,
କି କରୁଥିବ ଅନୁଜ କୁଟୀରରେ ।

ଝିଆପିଆ ତାଙ୍କ କିସ ହେଉଥିବ,
କି କଲ୍ କି କଲ୍ ନଠୁର ଧାଇବ !

ହେବ ଦଶହରା କୁଆଁର ପୁନିଅଁ,
ପୂଜୁଥିଲ୍ ବୋଉ ଘରେ ଥାପି ଢିଅଁ ।

କେତେ ପିଠାପଣା ଆରିଷା, କାକରା,
କରୁଥିଲ୍ କାହା କେତେ ମନଧରା ।

ଯାଇ ପଡ଼ିଶାର ଚହଳ ଗହଳ,
ଆହା ! ଦେଖି ହେଉଥିବେ କି ବିକଳ ?

ଆକୁଳେ ଚିତ୍ତ ମୋ' ହେଲ୍ ଆନ୍ଦୋଳିତ,
ଫେର ଅଧା ପଥୁଁ ଆସିଲି ତୁରିତ ।

ପ୍ରାଥମିକ ଶିକ୍ଷା ନବୀକରଣରେ,
ସରକାରଙ୍କର ଦୃଷ୍ଟି ଆସି ପଡ଼େ ।

ଡାକରା ଆସିଲା ପ୍ରବେଶ ପରୀକ୍ଷା,
କରିଥିଲି ଯାହା ପାଇଁ ମୁଁ ପ୍ରତୀକ୍ଷା ।

ଦିନମାନ ଗଡ଼େ ପାଣି ସୁଅ ପରି,
ଆସି ପହଞ୍ଚିଲ ନିର୍ଦ୍ଦେଶ ଜରୁରୀ ।

ବଜନ୍ତି ଷେଦେ ଖ୍ୟାତ ଜାଣିଥିଲି,
ତାନ ବ୍ୟବସାୟୁ ପଟୁ ସେ ସ୍ୱାଂଜଳ—

ବ୍ଲକ ଅନ୍ତର୍ଗତ ମକରମ୍ପଖୋଲରେ,
ଶିକ୍ଷକତା କଲି ଆଦ୍ୟ ସୋପାନରେ ।

ମାନସ-ମୁକୁଳ ହେଲା ମୁକୁଳିତ,
କେନ୍ତୁ ଜନ୍ମମାଟି କଲି ଆନ୍ଦୋଳିତ ।

ଭାବିଲି କମିତ ଦିନମାନ କଟେ ?
ଶିକ୍ଷକ ପଦକୁ ଲଭି ସ୍ଥିର ଶଟେ ।

ଶିକ୍ଷକତା ପାରଶ୍ରମିକ ପାଉଣା,
ଗାଡ଼ି ଭଙ୍ଗାକୁ ମୋ' ହେଲା ଶେଷେ ଉଣା ।

ଶାସ୍ତ୍ର କହେ ଜ୍ଞାନ ଧନ ଅର୍ଜିବ,
ନିଜ ପାଇଁ ରଖି ଅନ୍ୟରେ ବାଣ୍ଟିବ ।

ନିଜ ପାଇଁ କଲେ ଆତ୍ମସାତ୍ ଅର୍ଥ,
ହୁଅଇ ଜୀବନ ବିଫଳ ବ୍ୟର୍ଥ ।

ଶାସ୍ତ୍ର ଜ୍ଞାନ ସବୁ ମନରୁ ଫୋପାଡ଼ି,
ନଭ ଲେଉଟା କଲି ଚଳସବୁ ଗାଡ଼ି ।

ଖିଆପିଆରେ ମୋ' ନ ବଳିଲା ଟଙ୍କା,
ଶିକ୍ଷାଦାନ ହେଲା ଉଦ୍‌ବେଗ ନିଷ୍ଠା ।

ସେଯୁନେ ସନ୍ନେ ନାଚିଲି ଢଙ୍ଗେ,
ଜନ୍ମମାଟି ଲଜ୍ଜା ଖେଳା ନାନାରଙ୍ଗେ ।

ଦୁଃଖୀଶ୍ୟାମ ପଟ୍ଟନାୟକ ଆତ୍ମୀୟ,
ଅଗ୍ରଜ ପ୍ରତିମ ପୂଜ୍ୟ, ନମସ୍ୟ ।

ସମଦର୍ଶୀ ଭାବୁ ଥିଲେ ସଦା ଭାବେ,
ଭାଳିଲୁ ସଜନେ ଦୁଜନେ ଗଉରବେ ।

ଦେଲୁ ଦରଖାସ୍ତ କଲୁ ବନ୍ଦୋବସ୍ତ,
ବଦଳି ଆଦେଶ ଆସିଲା ତୁରନ୍ତ ।

ସ୍ପଷ୍ଟ ଲେଖାଥିଲା ଆଦେଶପତ୍ରରେ,
ପାଲସରା ବ୍ଲକ ସୋଡ଼କ ସ୍କୁଲରେ ।

ସହକାରୀ ରୂପେ ହେବ ନିଯୁକତ,
ପୁଞ୍ଜା ଫୁଲ ପରି ହେଲି ମୁଁ ଉଷତ ।

ନରସିଂହ ଦାସ ହାକମ ବେବର୍ତ୍ତା,
ଗୁଣ ଗାରମା ଯା’ ସୁଖ-ସ୍ମୃତି-କଥା ।

କ୍ଷୀଣକାୟ ବପୁ ଜରା ଜୀର୍ଣ୍ଣଶୀର୍ଣ୍ଣ,
ଦେଖି ଦେଖାଇଲେ ଆସ୍ଥା ତାଙ୍କ କ୍ଷୀଣ ।

ଖର୍ବକାୟ ଆଉ ଅଥର୍ବ ଏ ଜଣେ,
ସାଧା, ସିଧା, ସରଳଆ ଅଜ୍ଞ ଜ୍ଞାନେ ।

କଲେ କେତେ ମୋରେ ଥଣ୍ଡା ପରିହାସ,
“ଏତେଦିନେ ତୁମ ଦର୍ଶନ ଆଭାସ ?

ଜାଣନା ମୁଁ ତୁମ ହାକମ ପ୍ରବର,
ଦେଖା କରିବାକୁ ମିଳିଲାନି ତର ?

ଶିକ୍ଷକତା କସ କରୁଥିବ ତହିଁ ?
ଏତେଦିନେ ଯେବେ ତୁମେ ଆସିଛଇଁ ?”

ଥଣ୍ଡା ପରିହାସେ କରିଲେ ସମ୍ଭାଷ,
“ତେବେ ପଚାରୁଛି ଉତ୍ତର ପ୍ରକାଶ ।

ଅଛି ଏକ ସ୍ଥାନ, ଯିବ କି ‘ବର୍ଦ୍ଧିମା’,
‘ବର୍ଦ୍ଧିମା’ରେ କଏ ଜାଣୁଛି ବର୍ଦ୍ଧିନ ।”

ଉତ୍ତର ଶୁଣି ମୋ' କଲେ ଆଉ ଏକ,
"କାଲମ୍ଭେ ହେବ କି ପ୍ରଧାନ ଶିକ୍ଷକ ?"

"ଛୁଡ଼ିବନି କେବେ ଘୋଡ଼ା ଯଦି ମିଳେ,
ଘୋଡ଼ା ଚଢ଼େ କଏ ଧାଇଁ କସ ମିଳେ ?"

ଉତ୍ତର ଶୁଣି ମୋ' ପ୍ରଶ୍ନ ଏକ କଲେ,
"ତେବେ ପାଠ ଖାଲି ତୁମେ ଚିବ ବକେ ?"

"ପାଠ ଖାଲିରେ ତ ଖାଲି ପାଠ ଆଜ୍ଞା",
ଉତ୍ତର ଶୁଣି ମୋ' ନକରି ଅବଜ୍ଞା—

"ବସ ବସ" ବୋଲି କଲେ ସମାଦର,
କୁଣ୍ଢାଳି ପୁଚ୍ଛା ସେ କଲେ ବିବିଧର ।

କଲମ ଭିତରେ ଡାଇରି ଭିତରେ,
କି ଲେଖି ଥୋଇଲେ ମୋର ଅଙ୍କତରେ ।

ସେହି ପୁଣ୍ୟ ଶ୍ଲୋକ ପ୍ରାତଃ ସ୍ମରଣୀୟ,
"ହେଉ ଯାଅ" ଭାଷା ଭାଷି ଦେଲେ ପ୍ରିୟ ।

ଦିନ କେତେ ଗଲା ଡାକ ଦିନେ ଥରେ,
ଧରାଇଲେ ଏକ ଚିଠି ମୋ' ହାତରେ ।

ପଢ଼ା କଲି ତହିଁ ସ୍ପଷ୍ଟ ଲେଖାଅଛି,
ବୋର୍ଡ଼ ଉ. ପ୍ରା.ରେ ମୋ ନିଯୁକ୍ତି ମିଳିଛି ।

ଉଦାର ଚରିତ ତାର ଅବସ୍ମୃତ,
ପିଉଛି ତାଙ୍କ ଚରିତ-ଗୀତାମୃତ ।

ସପ୍ତାହେ ମିଳିଲି ଶତ ଉତ୍ସବରେ,
ବସନ୍ତ ବାବୁଙ୍କ ଯାଇ ପୁରତରେ ।

"ବସନ୍ତ ବସନ୍ତ" ଘୋଷନ୍ତେ ଉଷନ୍ତେ,
ବେନି ହସ୍ତେ ଚସ ଦେଲ ବେନି ହସ୍ତେ ।

କରିଲେ ସଗ୍ରନ୍ଥେ ମୋର ସମାଦର,
ସଙ୍ଗ୍ରାମ ମଣ୍ଡନ ଏଇ ଆଠଗଡ଼—

ଖ୍ୟାତ ଗଡ଼ୁରବ ଗୌରବ ଗୁଞ୍ଜିତ,
ଫୁଲଫଳ ଫୁଲ ଉଦ୍ୟାନ ମଣ୍ଡିତ ।

ଦେଖୁଥିଲି ଯା'ରେ ସ୍ୱପ୍ନ-ଦରପଣେ,
ସେ ଫଳଫଳ ମୋ' କର୍ମସ୍ଥଳୀ ମନେ ।

ମଥା ପାତି ତାରେ ବନ୍ଦ ସବିନୟ,
ଧନ୍ୟ ହେଲି ମୁଁ ତା' ଅଧମ ତନୟ ।

ତା' ମାଟିକି କଲି ଚନ୍ଦନ କପୋଳେ,
ଲେପିଦେଲି ମୋଦେ ଆନନ୍ଦ ହିଲ୍ଲୋଳେ ।

ତା' ମାଟି ସଳିଳ ନିତ୍ୟ ସୁଧା ଝର,
ବନ୍ଧ ଉରେଆଣି ପୁଣ୍ୟତୋୟା ଚର !

ଦେଲି ଭୁଣ୍ଡେ ଆଣି ମୁଣ୍ଡେ ଲଗାଇଲି,
ମୋ' ପ୍ରଣେତ୍ର ଦେନ ସେନ ମୁଁ ବୋଇଲି ।

ମାଟିକି ମଣିଲି ମାଆଟି ଚରଣେ,
ମଥା ପାତି ନେଲି ବନ୍ଧ ସବିନୟେ ।

ତା' ମାଟିର ପ୍ରତି ଶିଳା ଶାଳଗ୍ରାମେ,
ତା' ମାଟିର ଲତା-ଦ୍ରୁମ ଘୁରୁଣ୍ୟାମେ—

ମୋ' ଦୃଷ୍ଟି ପଲକ ପକାଇ ପୁଲକେ,
ରହିଁ ହସିଦେଲି ତା' ଘୁରୁ ଆଲୋକେ ।

ଶୁଣିଲି କାନେ ତା' ପକ୍ଷୀର କୂଜନ,
ଫୁଲୁଁ ଫୁଲେ ମଧୁମକ୍ଷିକା ଗୁଞ୍ଜନ ।

ଛନ୍ଦକ ମଞ୍ଜୁଳ ପ୍ରଜାପତି ଖେଳ,
ଧାଇଁଲି ତା' କତ ଜାଗିଲା ଉଦ୍‌ବେଗ ।

ଝୁରୁ ଚନ୍ଦ୍ରାତପ ଜ୍ୟୋଛନା ତୋରଣେ,
ଉଷା ପ୍ରଦୋଷର କନକ କିରଣେ ।

ଲତା ପାଦପର ଗୁଚ୍ଛ କିଶଳୟେ,
ତା' ମାଟି ପବନ ମନ୍ଦର ମଳୟେ ।

ଶିଶୁ ଓର ହସି କର ଗଳା ଝୁଳ,
ଦେହେ ଢୋଇ କୋଳ ତାର ମାଟି ବାଲି—

ନାଚ ଖେଳ ଲୋଟିଗଲି ତା' ମାଟିରେ,
ମଣିଲି ମୁଁ ନାଇଁ ଏ ମର୍ତ୍ତ୍ୟ କୁଟୀରେ ।

ବୋଧ କଲି ସ୍ୱର୍ଗ ବସୁନ୍ଧରା ଧରା,
ମଣିଲି ସ୍ୱର୍ଗୀୟ ନିସର୍ଗ ପସରା ।

ଯା' ପାଇଁ ଏ ପ୍ରାଣ ପିଣ୍ଡ ଗଲା ଝଡ଼ି,
ଯା' ପାଇଁ ପାଶଶ୍ରେଣିକ ନେଲା ଗାଡ଼ି ।

ଯା' ଲାଗି ବୁକୁରେ ଏତେଟା ଉତ୍କଣ୍ଠା,
ମନ ମୁକୁରେ ଯା' ଛବି ଛବିଳତା ।

ଯା' ଲାଗି ପରାଣ ଦହି ହେଲା ଖାଲି,
ଯା' ଲାଗି ଜୀବନ ମରୁ-ଶୁଷ୍କ ବାଲି ।

ଚାଲିଥିଲି ଖାଲି ଧୂଳି ଧୂସରିତ,
ଫୁଲସର ଫୁଲ ଉଦ୍ୟାନ ମଣ୍ଡିତ ।

କି ଅଛି ତା’ ପଟେ ଲେଉଟା ମୋ’ କହତ ?
କି ଅଛି ତା’ ପଟେ ସଂପଦ ମହତ ?

ଲେଟି ହେଲେ ଯା’ର କୋଳେ ବାରେ ବାରେ,
ଫୁଟି ଫାଟି ପଡ଼ ଅମୃତ ଓଗାଳେ ।

ସେହି ମୋ’ ଜନନୀ ପ୍ରିୟ ଜନ୍ମମାଟି,
ମାତୃସ୍ନେହ ସୁଖ ସମ୍ପଦର ସାଥୀ ।

ଧରାର ଭିତରେ ଦେଶ ସବୁ ସମ,
କହ କଏ ଅଛି ତା’ର ଅନୁପମ ?

କହ କଏ ତା’ର ଉଚିତ ସନ୍ତାନେ ?
ହାତ ଟେକିଦେବ, ମୁହିଁ ବୋଲି ଜଣେ ।

କହ କଏ ତା’ର ସମ ଭୂଇଁମାୟା,
ଅଟେ ଏକମାତ୍ର ମାତୃ ମହାମାୟା ।

ତା’ର କୋଳେ ବଢ଼ି ଯିବ ଖେଳବୁଲି,
ସେ ଏକା ମୋ’ ପାଇଁ ସ୍ୱର୍ଗ ସୁଖ ପୁରୀ ।

ବନ୍ଧାଚନା ତା’ର କେ’ କରୁ ନକରୁ,
ଶୁଣୁ କୁଞ୍ଜବୀଥି ମଞ୍ଜୁଳ ଭିତରୁ—

କେକା, କେକା ଗାନ କାକ, ପିକ ସ୍ୱନ,
ତା’ ପାଇଁ ଚୁମିବ ନୀଳାଭ ଗଗନ ।

ମାଟି ଯା’ର ନୁହେ ମାଟି ସୁବର୍ଣ୍ଣର,
ସେଇ ମୋ’ ମାଆଟି ଚିରକାଳ ସୁର ।

ଯୌବନ ଉଦ୍ଧୃଙ୍ଗେ ଯୁବ ସୁଲଭତା—
ତା’ ଭିତରେ କରେ ମୁଁ ଯେ ଶିକ୍ଷକତା ।

ଯାଜ୍ଞବାର ଧାର ପର 'ନିଷ୍ଠା' ଯହିଁ,
ମନ୍ତ୍ର ପୂତ ଚରେ 'ଗାୟତ୍ରୀ' ଯେ ତହିଁ ।

ସରେ ସ୍ନାନ କରି ଯଥା ଗାଭମାରେ,
'ମାଳମା' ରାଜନ୍ତ, ଆଦର ସମ୍ଭାରେ ।

ଭଗବାନଙ୍କର ବେଦମନ୍ତ୍ର ପୂତ,
କରୁଥାଇ ଯହିଁ ସୁପବର୍ଷୀକୃତ ।

ପରଶ ଯା' ମଧୁ ଅମିୟ ସତତ,
ମୁଖ୍ୟ ଭାବେ ତହିଁ ରାଜନ୍ତ 'ବସନ୍ତ' ।

ଯୋଗନିଷ୍ଠ ବ୍ରତ ପାଳନେ ମୁନୀନ୍ଦ୍ର,
ଯୋଗ ସାଧୁଛନ୍ତି ସତେ କି 'ରବୀନ୍ଦ୍ର' ।

ସେଭଳି ପାବନ ପୁଣ୍ୟ କର୍ମସ୍ଥଳୀ,
ନିତ୍ୟ ମହୋତ୍ସବମୟ ବୋଧ କଲି ।

ପୂଜ୍ୟ ହାକିମ ମୋ' ଶ୍ରୀ ମଧୁସୂଦନ—
ମିଶ୍ର ଯହିଁ କସ ଦୁଃଖର କାରଣ ?

ନୈଷ୍ଠିକ ବ୍ରାହ୍ମଣ ସାତ୍ତ୍ୱିକ ପ୍ରବର,
ଶୁଦ୍ଧ ସ୍ୱଚ୍ଛ ଯା'ର ହୃଦୟ କନ୍ଦର ।

ଛନ୍ଦ, କପଟତା ପଥରେ ଉଜାଣି—
ସାରଳ୍ୟ ସଂଜାତ ମିଷ୍ଟ ଯାର ବାଣୀ,

ଦୁଃଖ, ଶୋକ, ଜରା ଜୀର୍ଣ୍ଣ ପରାହତ,
ବୟସରେ ପଛେ ହେଲେ ପରିଣତ ।

ତାମ୍ବୁଳ ରଞ୍ଜିତ ଚନ୍ଦନ ଚର୍ଚ୍ଚିତ,
ଅଭ୍ରବନ୍ତ ଶୁଭ୍ର ବସନ ଭୂଷିତ ।

କାୟ ବପୁବନ୍ତ, ନୟନାଭିରାମ,
ହେମ ଗୌରତନୁ ଗୁଣୋପମ ନାମ ।

ଝଡ଼ ଝଞ୍ଜା ବାତ ଯା'ର ପଦାନତ,
ହିମ ଆଚ୍ଛାଦିତ ହିମାଳୟ ବତ ।

ଦେଖୁଚି ତାଙ୍କର ଜାତୁଆ ଭାବନା,
ବଦଳି ଆଦେଶ ହେଲା ଯେବେ ଜଣା ।

ଚଲଯଗ ଠାରୁ ଖଣ୍ଡପୁର ନାଳ,
ସୁଗମ୍ୟ ଦୁର୍ଗମ ସୁଦୂର ପଙ୍କାଳ ।

ତାହାଙ୍କ ପଶ୍ଚାତ ଘନ ବନାକୀର୍ଣ୍ଣ;
ହୁବ ସୁଲଭତା ତହିଁ ଦେଖାଇଣ—

ଶାସନ୍ତି ଅଧୀନେ ସମତା ମନ୍ତ୍ରରେ,
ଉଚ୍ଚ ନୀଚ ଭେଦାଭେଦର ଊର୍ଦ୍ଧ୍ୱରେ ।

ଅତି ସମାଦରରେ ମମତା-ବନ୍ଧନେ,
ଅଧୀନେ ରଖନ୍ତି ଯହିଁ ଜଣୁଁ ଜଣେ ।

ନ ଜାଣନ୍ତି ଯହିଁ ଦୁଃଖ, ଶୋକ, ଜର,
ଯେତ ନମଣନ୍ତି ଶାସନ-ଖରତା ।

ଧରନ୍ତି ଯେଉଁ ଶାସନର ଦଣ୍ଡ,
ନୁହେଁ ସିଏ ଦଣ୍ଡ ନୁହେଁ ଦଣ୍ଡନ୍ତି ।

ଜୀବନରେ ଯାର ଅଭୟ ପ୍ରଦାନ,
ଶାସନ ତାଙ୍କର ଉଦ୍ଦେଶ୍ୟ ପ୍ରଧାନ ।

ନାମକରଣର ଯାଥାର୍ଥ୍ୟ ପାଦର,
ସୁନ୍ଦର ମଧୁର ନକ୍ଷତ୍ର ଶାସକ ।

ଆବିଳ ସଂସାର୍ଶ୍ଣ ତୁଚ୍ଛ କଦାକାର—
ନୁହେଁ, ଚନ୍ଦ୍ରାଧାର ଅସାମାନ୍ୟ ଯା'ର ।

ଅସାଧାରଣ ସେ ପ୍ରତ୍ୟୁତ୍ପନ୍ନ ମତି,
ସକଳ କ୍ଷେତ୍ରରେ ଅଛି ଯା' ବ୍ୟୁତ୍ପତ୍ତି ।

ସ୍ୱଜାତୁ ଧର୍ମର ରୂପ ପରକାଶି,
ଶ୍ରୀମୁଖରୁ ଝରେ ଦିବ୍ୟ ତେଜୋରାଶି ।

ଚିକିତ୍ସା, ଜ୍ୟୋତିଷ ଶାସ୍ତ୍ର ବିଭବରେ,
ଗ୍ରାମର ପ୍ରଧାନ, ଭାଳିକା ଭିତରେ ।

ତାଙ୍କ ପିତା ବଳଭଦ୍ର ମିଶ୍ର ପର,
ଆଠଗଡ଼ ଧର ଏଇ ଫୁଲସର—

ମଣ୍ଡନ ରଞ୍ଜନ ଜନ ମାନସରେ,
ସେ ପୁତ୍ରଙ୍କ କଥା ଲିଭିପାରେ ଥରେ ?

ସେଭଳି ଜନକ ଉଚିତ ଦାୟାଦ,
ପରିଦର୍ଶକ ମୋ' ପୂଜ୍ୟ ପୂଜ୍ୟପାଦ ।

ଚନ୍ଦ୍ରାଧାର ଯା'ଙ୍କ ପବିତ୍ର ସରିତ,
ନିତ୍ୟ ଯା'ର ବେଗ ନାଶେନ ଦୁରିତ ।

କାୟ, ମନୋବାକ୍ୟେ ଏକ ମୂର୍ତ୍ତିମନ୍ତ,
ମିଶ୍ର ଯଦୁନାଥ ମୋର ଗୁରୁବତ ।

ଯା' ସଙ୍ଗେ ବିହାର ମୋର ପୁଣ୍ୟଫଳ,
ବନ୍ଧୁତା-ସୂତ୍ରରେ ଗୁନ୍ଥା ମୁଁ ଭାସ୍କର ।

ସ୍ମୃତି ପଦେ ପଦେ ପ୍ରତି ସ୍ତରେ ସ୍ତରେ,
ମୁଁ ଥାଏ ତାଙ୍କର ହୃଦ-ଗନ୍ଧାଢରେ ।

ତାଙ୍କ ପରାମର୍ଶ ଆଦେଶ ନିର୍ଦ୍ଦେଶ,
ମୋ' ପାଇଁ ମଙ୍ଗଳ ଆଶିଷ ଅଶେଷ ।

ବାଣୀ ଯା'ଙ୍କ କଣ୍ଠେ ଗୁଞ୍ଜରିଲ ପରି,
ଆଦର୍ଶ ଶିକ୍ଷିକା ବସନ୍ତ ମଞ୍ଜରୀ ।

ପ୍ରବନ୍ଧ ପଠନେ ଜଣା ସଦ୍ୟ ତୋଳା,
ମଞ୍ଜୁବାଳାଙ୍କର ବାଣୀ ମଞ୍ଜୁବୋଳା ।

ଶ୍ରୀମତୀ ସୁକାନ୍ତ କାନ୍ତ ପଦାବଳୀ,
ସୁଖ ଶ୍ରାବ୍ୟ ମୋର ସ୍ମୃତିର ସଙ୍ଗାଳି ।

"ଇଚ୍ଛା ହୁଏ ଦେଖିବାକୁ କବି ପତ୍ନୀ",
କହିଥିଲେ ଥରେ ବନ୍ଧ ଅଦୃଶ୍ୟନ୍ତୀ ।

ଶ୍ରୀମତୀ ସୁକାନ୍ତ ତାଙ୍କ ପ୍ରିୟ ସଖୀ,
ମିଳି ଆସିବେକି ପୂର୍ବ କଥା ରଖି ?

ତାଙ୍କ ଆସିବାରେ ଆଶ ମୋ' ଅଶେଷ,
ଯାହା ଥିଲା ମୋର ଫେଡନ୍ତ ସନ୍ଦେଶ ।

ସମ୍ପଦ ମୋର ଭାଇ ଓ ଭଉଣୀ,
ସ୍ନେହାନୁବନ୍ଧନେ କରିଅଛ ଋଣୀ ।

ଯେତେ ପୂଜ୍ୟ ପୂଜ୍ୟା ଶିକ୍ଷକ ଶିକ୍ଷିକା—
ସକଳେ ମୋ' ପାଇଁ ଆତ୍ମୀୟ ପରିକା ।

ସକଳରେ ମଣି ଗୁରୁ ଅନୁପମ,
ତ୍ରୁଟି କରଇ ମୁଁ ଭାଇ ଅଧମ ।

ଭେଦାଭେଦ ଜ୍ଞାନ ନାହିଁ ମୋର ପାଶେ,
ସକଳରେ ମିଶି ମିଶାଏ ସହାସେ ।

ଚଂଚଳି ଆସିଛି ଝଡ଼ ଝଞ୍ଜା ଯହିଁ,
ସହାୟ ହେବାରେ କୁଣ୍ଠା ନାହିଁ ତହିଁ ।

ଯେ ଯେବେ ଲୋଡ଼ିଛି ମୋର ସହାୟତା,
ଜାଣିନ କି କେବେ ଭଜେ ନୀରବତା ।

ନୋହିଛି ବିମୁଖ ସହାସେ ସଦମ୍ଭେ,
ଫୁଲାଇଛି ଛାତି ଜାତି ଗଉରବେ ।

ଯେତେ ସଭା ଶୋଭା ବସେ ମଣ୍ଡପରେ,
ଦଣ୍ଡାୟମାନ ମୁଁ ହୋଇ ତହିଁ ତଳେ ।

ଶିକ୍ଷକ ଶିକ୍ଷିକା ଭାଇ ଭଉଣୀଙ୍କ,
ଦୁଃଖ କହିବାରେ ମୁଁ ଯେ ସବୁ ଭଙ୍କ ।

କାଢ଼ି କରାମତି କଏ କେଉଁ ପଣେ,
ଦବ କି ଯାଇଛି ଦାବି ଦେଲେ କ୍ଷଣେ ?

ଶିକ୍ଷକ ଶିକ୍ଷିକା ମୋ ଭାଇ ଭଉଣୀ,
ଅଜ୍ଞାତ କଥା ମୋ ସବେ ଥିବ ଶୁଣି ।

ନଥିଲି ଶୋଚନା ହାକିମ ବଞ୍ଚନା,
କହିପାର ତୁମେ ମୋ କର୍ମ ରଚନା ।

ଶିକ୍ଷାୟତନ ମୋ' ଶାନ୍ତି ନିକେତନ,
ଦେବ ମନ୍ଦିର ସେ ସରଗ ଭବନ ।

ଛାତ୍ର ଛାତ୍ରୀ ମୋର ପ୍ରୀତିର ସଙ୍ଗାଳି,
ଦେବତାର କାନ୍ତି ଯହିଁ ଉଠେ ଝଳି ।

ବାଣୀ ବାଗୀଶ୍ୱରୀ ଦେବୀ ସରସ୍ୱତୀ,
ରଚନ୍ତି ଯା' ଲୀଳା ମାଧୁରୀ, ଶାଶ୍ୱତୀ ।

ଶିଶୁବନ୍ଧୁଙ୍କର ପ୍ରମୋଦ ଉଦ୍ୟାନ,
ମୋ' ପାଇଁ ପର ସେ ନନ୍ଦନକାନନ ।

ଟଗର, ଚଗାଠ, ମଲ୍ଲୀ, ଜୁଇ, ଜାଇ,
ଅପରାଜିତା ବା ହେନା! ଗେଣ୍ଡୁ ତହିଁ ।

ତହିଁରୁ ପ୍ରସ୍ଫୁଟି ମୋର ପାରିଜାତ,
ବିକଚ ସୁଷମା-ସଉରଭ-ସ୍ନାତ ।

ଲଳିତ କୋମଳ କର ପରଶରେ,
ପ୍ରତିଫଳ ମୋର ରସାଳ ଶ୍ରୀଫଳ ।

ହାସ ତାଙ୍କ ମୋର କୈବଲ୍ୟ ନିର୍ମାଲ୍ୟ,
ତାଙ୍କ ଛଇ ଛଟା ଠାଣି ମୋ' ଅମୂଲ୍ୟ ।

ଲଭିଥିଲେ ତାଙ୍କ ପୂତ ସନ୍ନିଧାନ,
କା' ପାଇଁ ସେ କପ ମୋର ସୁଧାପାନ ।

ଅଗ୍ରଜ, ଅନୁଜ ଯେତେଛନ୍ତି ଆଜ,
ଜାଣ ଭାଇ ମୋର ଶିକ୍ଷକ ସମାଜ ।

ତାଙ୍କ ଶକ୍ତି ମୋର ଶସ ଆଦର୍ଶର,
ମୁଁ ଅତି ସାମାନ୍ୟ କ୍ଷୁଦ୍ର କଳେବର ।

ହୃଦେ ଜାଳି ଜାଳି ଜାଣି ପ୍ରେମ ବହ୍ନି,
ମହୋତ୍ସବମୟ ମୋ' ଜୀବନ ମଣି ।

ଜାତିର ସଙ୍କଟ କାଳ ବେଳେ କଦା,
ଆସୁ ପଛେ ବାଧା ସଜାଗ ମୁଁ ସଦା ।

ସିଂହାସନ କେନ୍ଦ୍ର ହୋଇଥିଲି ଯେବେ,
ଶୁଣିଥିବେ ମୋର କବିତାକୁ ତେବେ ।

ନହଥିଲୁ ପଦେ ଜାଣି କଥା ନେଇ,
ମୁଁ ନିମିତ୍ତ ମାତ୍ର ତୁମ ଆଶିଷେ ହିଁ ।

ସମ୍ପୂର୍ଣ୍ଣ ଅବହେଳିତ ଏହି ଶିକ୍ଷା,
କିଏ କରୁ ଅବା ନକରୁ ସମୀକ୍ଷା ।

ଦେଶ ମେରୁଦଣ୍ଡ ଗଢ଼ି ନେବା ପାଇଁ,
ଶିକ୍ଷା ପର ଏକମାତ୍ର ତହିଁ ଦାୟୀ ।

ବିଶେଷେ ନହେଲେ ପ୍ରାଥମିକ ସ୍ତରେ,
ଦେଶ ମେରୁଦଣ୍ଡ ଭୁଷୁଡ଼ି ଯେ ପଡ଼େ ।

ସ୍ୱଳ୍ପ ଦରମା ଗ୍ଲେଟିଆ ପଦବୀ,
ଅଧିକେ ବିମୁଖ ଏହା ଅନୁଭବ ।

ଗାଆଁ ଗହଳର ଅବଧାନ ପଣେ,
ନିଜନ ମଧ୍ୟେ ଅଧିକାଂଶ ଜନେ ।

ସେ ବେଳେ ନେଇଥି ଏକମାତ୍ର ଦୀକ୍ଷା,
କ୍ଷେତ୍ର ମୋ' ପବିତ୍ର ପ୍ରାଥମିକ ଶିକ୍ଷା ।

ଦୈନ୍ୟରେ ଦଳି ସଇନାକ ସମ,
ପୁଣ୍ୟ ମଣିଲି ଶିକ୍ଷକତା ମମ ।

ସେ ପାଇଁ ହେଲି ମୁଁ ଏତେ ବେଗାତୁର,
ହୀନ ମନ୍ୟ ତାକୁ ମନୁଁ କଲି ଦୂର ।

ନିଃଶଙ୍କେ ସାଜିଲି ତହିଁ କର୍ମୀବୀର,
ସେବାରେ ଜାଗ୍ରତ ଦେଶର, ଜାତିର ।

ଦେଶାତ୍ମଜ୍ଞାନରେ ହେଲି ଉଦ୍‌ବୁଦ୍ଧ,
ଏ ବାସନା ମୋର ଯାବତ ପ୍ରବୁଦ୍ଧ ।

ଆମେ କେଉଁ ପର କସ କରିଥାଉ,
ଜାଣୁ ଦେଶବାସୀ କାର୍ଯ୍ୟକଳାପରୁ ।

ଜୀବିକା ନବାଦେ ଚିନ୍ତା କଲି ଠିକ୍,
ନିଜକୁ ଶିକ୍ଷକ ମଣି ପ୍ରାଥମିକ ।

ହେତୁ ଜ୍ଞାନ ପର ନ ଲାଗିଲା ମୋତେ,
କାୟ, ମନ, ବାକ୍ୟ ମିଳାଇଲି ସ୍ରୋତେ ।

ଥିଲି ଯିନା ତୁଚ୍ଛ ଆଜ ମୁଁ ଶିକ୍ଷକ,
ଗଢ଼ିବି ଦେଶର ନାୟକ, ସୈନିକ ।

କିରାଣୀ, ହାକିମ, ଡାକ୍ତର, ଓକିଲ,
ନେତା, ଅଭିନେତା, କବି, କଳାକାର ।

ମନ୍ତ୍ରୀ, ଯନ୍ତ୍ରୀ, ତନ୍ତ୍ରୀ, ଯେତେ ବା ଚୋଳବ,
ଜୀବନ ମୋହର ସାର୍ଥକ ମଣିବ ।

ଅଜ୍ଞାନ-ଅନ୍ଧାର ତାମସ ଜଡ଼ିତ,
ଜ୍ଞାନାଲୋକେ ଯେହ୍ନେ ହୁଏ ବିଦୂରିତ ।

କୋମଳ ଶିଶୁର ହାସ ଅଫୁରନ୍ତ—
ଓଠେ ଫୁଟାଇବି ଭାଷା ରସବନ୍ତ ।

ମଣିଷଟେ ପର ମଣିଷ ରୂପରେ,
ଧନ୍ୟ ମୁଁ ମଣିବି ଥୋଇ ଧରାତଳେ ।

ଆଜ ଶିଶୁ କାଲି ଦେଶ ନାଗରିକ—
ଦେଶ ମେରୁଦଣ୍ଡ ସେ ପାଇଁ ଶିକ୍ଷକ ।

ଏ ଗର୍ବ ଗୌରବ ନିଏ ଯେଉଁ ଜାତି,
ଜାତି ଗଢ଼ି ବୋଲି ଫୁଲେ ମୋର ଛାତି ।

ପିଲାଏ କହିବେ ମୋ' ପର ଜୀବନେ,
ସାଧୁ ମାଷ୍ଟ୍ର ବୋଲି କଏ ଥିଲେ ଜଣେ ।

ଅଭୁଲ ତାଙ୍କର ମୃଦୁ ମନ୍ଦ ଗିର,
ତାଙ୍କ ଅନୁଦାନ ମୁଖ ସ୍ମୃତି ଶର ।

ବୃକ ନଡ଼ା କୁଅାଁ ଦେଖି କୁଟୀରରେ,
ପ୍ରଣତି ଡ଼ାକିବେ ମୋ' ଜୀବନ ପରେ ।

ମୋ' ହାତ ଲେଖାରେ ଲଗାଇଣ ହାତ,
କରି ଯିବେ ଯେତ୍ନେ ଭକ୍ତ ଅଶ୍ରୁପାତ ।

ଭକ୍ତିରେ ମସ୍ତକ କରିଦେବେ ନତ,
ପ୍ରିୟାରେ ମୋ' ଦେଖି ଯୋଡ଼ି ବେନି ହସ୍ତ ।

ସୁତା ସୁତେ ନେଇ କୋଳାଗ୍ରତ କରି,
ଦେବେ ନଉଜ୍ଜଳ ମୋ' କଥା ସୁମରି ।

ସଶ୍ରଦ୍ଧେ କୁଟୀରେ କରି ପଦପାତ,
ଦେଖିବେ ମୋ' ଫଟୋ ଯେବେ ଅକସ୍ମାତ ।

ଆନନ୍ଦାଶ୍ରୁ ପ୍ଲୁତ ନୟନ ପକାଇ,
ଫେରିଯିବେ କାନ୍ଦ ଧକାଇ ଧକାଇ ।

କସ ହେଲ ବୋଲ ଯେବେ ପ୍ରିୟା ଧୀରେ,
ପୁଚ୍ଛିବେ କହିବେ ମୋ' ସକଳ ଗିରେ ।

ଏମିତି ସନ୍ତାନ ଗଢ଼ି ତୋଳିଥିବ,
ଯାହା ଦେବା କିଛୁ ବାକି ନ ରଖିବ ।

ନ ଆଣିବ ମନେ ବଡ ସାନ ଭେଦ,
ନ ରଚିବ ଉଚ୍ଚ ପ୍ରାଚୀର ବିଚ୍ଛେଦ ।

ବଡ଼ ଯେତେ ଅଛେ ପୂଜ ଗୁରୁଜନେ,
ଶିଖ ଏଇ ଗୁଣ କହିଦେବ ସାନେ ।

ଯେଉଁ କାମ କଲେ ବାଧଇ ତୁମରେ,
ସେ କଥା ଆରୋପି ନଦିଅ ଅପରେ ।

ପର ପୀଡ଼ନରେ ପାପ ରାଶି ରାଶି,
ପର ଉପକାରେ ହୁଅ ସ୍ୱର୍ଗବାସୀ ।

ଏ ମହତବାଣୀ ଶୁଣାଇବ କାନେ,
ନ ରଖିବ ଚିତ୍ତ କେବେ ଧନମାନେ ।

ଭୌତିକ ବିଭବେ ହୋଇ ବିମୋହିତ,
ଝାସି ନଦେବାକୁ ଜୀବନ-ମହତ ।

ଯାହାଠା ଶିଖିଛ ଚିର ଉଚ୍ଚମନ,
ଯେଉଁ କର୍ମ କଲେ ସଦା ପୁଣ୍ୟଫଳ ।

ଯେଉଁ ପଥେ ଗମି ଆମର ପୂର୍ବଜ,
ହୋଇଲେ ଅମର ସେଇ ପଥେ ମଜ୍ଜ ।

ସବୁଠାରୁ ବଳି ଚରିତ୍ର ନିର୍ମାଣେ,
ଧ୍ୟାନ ଦେଇଥିବ ନିତ୍ୟ ଶିଶୁ ପ୍ରାଣେ ।

ଧର୍ମ ରଙ୍କ ହୁଅ ନିଃଶଙ୍କ ଚିତ୍ତରେ,
ଅଙ୍ଗୁଳି ଚାଳିବ ସଦା ସୁପଥରେ ।

ଚିନ୍ତିବ, କହିବ, କରିବ କର୍ମରେ—
ଦେଖାଇ ଆଦର୍ଶ ଶିଶୁ ସମ୍ମୁଖରେ ।

ମୁଁ ଯାହାଠା ତାହା ଯିଏ ଯାହା କହୁ,
ହିଂସା-ଅନଳେ ଦହିଲେ ବା ଦହୁ ।

ଦେଖାଉ ବା ବଡ଼ପଣ କରମଣ୍ଡ,
କଏ ମଣୁ ପଟଳ କରି ଧ୍ୟାନ ମଣ୍ଡ ।

ପାଗଳ ବୋଲି ବା ତୋଳୁ ଅଟ୍ଟହାସ,
ଛାଗ ମଣି ଧରୁ ବ୍ୟାଘ୍ର ବେଶବାସ ।

ବାହୁ ଯୁଗ ଛୁଣ୍ଡ ଫୁଲାଉ କେ' ମୋରେ,
ନାସିକା କୁଞ୍ଚନ କରୁ ଜୋରସୋରେ ।

ବୋକାଠାଏ ବୋଲି ଠେକା ମାରୁ ପଛେ,
ଠୋକା ଠାକରିଆ ଲେଖକର ଯମ ସେ ।

କରୁ ହତଜ୍ଞାନ ଅବଜ୍ଞା ସଦର୍ପ,
ଅବା ଜାଳୁ କୋପାନଳ ଦପ ଦପ ।

ଠାହୁଲି ଠାପରି ତା' ବୁଦ୍ଧି ବଳରେ,
କରୁ ଯେତେ ପାରୁ ଏଇ ଅଧମରେ ।

ମନେ ଆଣି ମୋର ମାତୃ ସୁବଚନ,
ପିତାଙ୍କ ଅଭୟବାଣୀ ଅନୁପମ ।

ବନ୍ଧୁଙ୍କ ଆଶିଷ ସୁବର୍ଣ୍ଣର ସ୍ତମ୍ଭ,
ଜୀବନେ କଦାଚ ନ ତେଜିବ ଦମ୍ଭ ।

ଏ ଜୀବନେ କଦା ପାତିବନି ହାତ,
ଥକି ପଡ଼ିବନି ଭୁଲି ଅଧାବାଟ ।

ନଇଁ ପଡ଼ିବନି ଝଡ଼ ଝଞ୍ଜା ବାତେ,
ବାଧା ପ୍ରତିବାଧା ଘାତ ପ୍ରତିଘାତେ ।

ସ୍ୱାଧୀନତା ମୋ'ର ହରାଇ ବସିବ,
ଅଧୀନତା କା'ର ସ୍ୱୀକାର କରିବ ।

ଭଲ ପାଇଲାର ପରି ଭଲ ପାଇ,
ଉପକାର କରୁଛି କରି ଦେବାଠାହିଁ ।

ଆମରି କର୍ତ୍ତବ୍ୟ ଥାଇ ଦୁନିଆରେ,
ତା’ ଛଡ଼ା ଅନ୍ୟଥା ମୂର୍ଖ ଗଣିଆରେ ।

ରଜାଙ୍କୁ ପରଜା ମାଉଁସକୁ ନଖ,
ହାକିମ ଅଧୀନ ଯଦି ସମ୍ପରକ ।

ଏ ସମ୍ପର୍କର କି ଉପମା ଥୋଇବା,
ଗଣତନ୍ତ୍ର ଆମ ସମ୍ବନ୍ଧ କହିବା ।

ଯେ ଦେଇଛି ସ୍ୱର୍ଗ ସେନେହ କଣିକେ,
ଅମୃତରୁ ବଳି ମଣ୍ଡିତ ଅଧିକେ ।

ତା’ ଠାରୁ କରୁଛି ଅଧିକ ଆଶ ମୋ’—
ନାହିଁ ଲୋଡ଼ା ମୋର ଚିତ୍ତ ପ୍ରକାଶ ମୋ’—

କରି ଥୋଇଦେଲି ମୋରେ ଯେ’ କଣିବ,
ସେନେହୁଁ କଣିବେ ଯଦି ସେ ପାରିବ ।

ସମ୍ମୁଖରେ କରି ମୋର ପରଶଂସା,
ପର ମୁହଁ ଉଁରେ କଲେ ଲୋକହସା ।

ଲଗାଇ ଆଙ୍କିବା, ଆଙ୍କି ଲଗାଇବା,
ଚିତ୍ରକର ପରି ଯାଦୁ ଦେଖାଇବା ।

ଏହି ତ ବିଚିତ୍ର ବିଷମ ପ୍ରମାଦ,
କହ କି ଏଥିରେ ଆନନ୍ଦ ବିଷାଦ ।

ଏହା ତାହା ବୋଲି ରଖି ମିଛ ସତ,
ମୁଁ ଦେଇନି କା’ରେ ମୋ’ ପ୍ରମାଣପତ୍ର ।

ତେବେ କାମ୍ପା କିବା ନିତି ପକାଉଥା,
ହିଂସା ପ୍ରତିହିଂସା ମରମ ଉତ୍କଣ୍ଠା ।

ଏ ସିନା ସ୍ୱଭାବ ରୁଚି ଅଭିରୁଚି,
ଏ କି କେବେ କହ ବିବେକର ତ୍ରୁଟି ?

ସୁଖ ଗଛ ତେର ଧଇଲି କି ନାହିଁ,
ଥର ଥର ସିଏ ଉପୁଡ଼ାଏ ଯାଇ ।

ପୁଣି କେତେ ତେର ଧରିଥିଲି ବୋଲି,
ନମଣ ମୁଁ ତାଙ୍କୁ ଧରିଦେବି ବୋଲି ।

ନାଟକ ଭିତରେ ମୁଁ ଖଳ ନାଏକ,
ରୂପ ଦେଇ ମୋରେ ପକାଅ ବା ଠେକ ।

ନାହିଁ ତହିଁ ମୋର କଳ୍ପିତ ଭାବନା,
ଦିଅ ପଛେ ମୋରେ ଲାଞ୍ଛନା ବଞ୍ଚନା ।

କିନ୍ତୁ ଶୁଖିଗଛ ରୋପି ଉପାଡ଼ିବା,
ହାରି ଦୁଃଖ ଲାଗେ କାହାକୁ କହିବା ?

ମେଣ୍ଟିବ ଏ ତୃଷା ତଟିନୀ ତଟରେ,
କଣ୍ଠଫଟା ଶୋଷେ ମରେ ଥରେ ଥରେ ।

ଆହ୍ୱାନ କରିବ ଯଦି କିଏ ଅଛ,
ମୋ' ହୃଦୟେ ଯଦି କିଛି ଜାଣିଅଛ ।

କହିବି ଫେଡ଼ି ମୋ' ସନ୍ଦେହ-ସନ୍ଦେଶ,
ଥିବ ଯଦି ମୋର ଦୋଷାଦୋଷ ଲେଶ ।

ଯୁକତି ବଳରେ ମୁକତି ମୁଁ ଜମା—
ନଲୋଡ଼ି ମାଗିବି ଦୋଷ ପାଇଁ କ୍ଷମା ।

ଆଉ କିଛି କଥା ନ କହୁଚେନ୍ତୁ ଭଲ
କହିବାକୁ କ୍ଲାନ୍ତ ହୁଏ ପରମକଳା ।

ଗାଆଁ ଅବଧାନ୍ତ ମାଷ୍ଟର ଘାଇଟି,
ପଢ଼ାଘର ପଛେ ଭଜନ୍ତୁ କାମିଡ଼ ;
ଦୁଇ ପୁଅର ଦୁଇ ଗୁଡ଼ିକା ଖେଳିଁ,
ଏକ ଏକ ହୋଇ ଲକ୍ଷ ଟଙ୍କା ଖେଳ ।

ମାଷ୍ଟରଙ୍କ ପୁରୁଣ ଭରମ୍ପରଙ୍କଆ,
ନ ଶୁଣିକୁ ପଡ଼େ ଧାନ୍ଦା ଯାଉଛି ।
ପାଣି ଅଣାଠାରୁ ଚିଠିଭଣ୍ଡା ଯାଏଁ;
ଦରମାର ଟଙ୍କା ଗୁଣି ହୋଇଯାଏ ।

ଆମ ଘରଭଡ଼ା ଶିକ୍ଷା ସମ୍ପର୍କେ
ଯା' ଥିଲା ଯାଇଛି ନଜରେ ଘାଟରେ
ବୋଉ ଚିନ୍ତାଧାରା ଦେହ ଝାଞ୍ଜିରେ,
ଆସିଲା ବିପଦ ଆପଦ ଉପରେ ।

ଦେଓ ମୁହଁରେ ମିଳା ଘଟି ଏକରେ
ଥିଲା ଯା' ସବୁ ସାଙ୍ଗ ଜମିବାଡ଼ି ।
ଗୋଟ ହାତୀ ଆସ୍ତି ଆସ୍ତ ଦାଣ୍ଡ ଆଗିଁ,
ପଣ୍ଡିତ ଜ' ଠକ୍କା କରିବ ଧାନ୍ଦା ଗୁଣି ।

ଛଅସ୍ତ ଡବା ଟଙ୍କା ଥିଲା ଜନଲୋଡ଼
ନନ୍ଦାଙ୍କ ହାତରୁ ଯାଇଥିଲା ସରି !
ଏ ଅନୁକ୍ରମ କି ଚାଲିବ କ୍ୟାବଳା ?
ସହିବେ ମୁକୁଳା ହସ୍ତ ଥିଲେ ପିତା ।

କଲେ ସୁବ୍ୟବସ୍ଥା ସଜାଇ ଘରର,
ମୂର୍ତ୍ତ ଗୃହଶ୍ରୀ କଲି କଣି ସୁନ୍ଦର ।

ନୂତନ ସଂସାର ନୂତନ ସାଜନା,
ସହଧର୍ମିଣୀ ମୋ' ପ୍ରିୟା ସୁଲୋଚନା ।

ରୂପଗୁଣେ ତାଙ୍କ ନାଙ୍କ ପରି ସିଏ,
ଉପମା ଦେବାକୁ କହ ଯିଏ ସିଏ ।

ପଲାଶ, ଶିମୁଳି, କହ୍ଲାର, ସିଆଳି,
କନିଅର, ଅପରାଜିତା, ଶେଫାଳି ।

କାଞ୍ଚନ, ମାଧବୀ, ଗୋଲାପ, ଅଶୋକ,
ମନ୍ଦାର, ଶିରୀଷ, କୁନ୍ଦ, କୁରୁବକ ।

ଜୁଇ, ଜାଇ, ହେନା, ମଲ୍ଲିକା, ମାଳତୀ,
ନିଆ, ନାଗେଶ୍ୱର, କେତକୀ, ସେବତୀ ।

ଚମ୍ପା, ଛୁରିଅନା, ତମାଳ, ବକୁଳ,
ସ୍ୱର୍ଣ୍ଣ କାଶ ହାସ, କଦମ୍ବ, ମଞ୍ଜୁଳ ।

ଅମରାବତୀର ନନ୍ଦନକାନନ,
ଅବା ପାରିଜାତ ସ୍ୱର୍ଗର ସୁମନ ।

କିଏ ପରନ୍ତ ହେବ ଊଣା ବା ଅଧିକା,
ମୋ' ପ୍ରିୟା ମୋ' ପାଇଁ କମଳ କଳିକା ।

ଯାହା ନେଇ ନାଆ ବାଏ ନିଶ୍ଚିନ୍ତରେ,
ବିଷମ ଜଞ୍ଜାଳ ସଂସାର ଭିତରେ ।

ଦୋଷ ଦେଇ ମୋତେ ରୁଷା କଲେ ଥରେ,
ଦେଉ ନଦେଉଣୁ ପଦ କୁଟୀରରେ ।

ବୁଝିଲନ ତାଙ୍କ କଥାଁ ଆନ୍ତରୁଷା,
ଶୁଣେ କ ହେଲରେ କୁହ ତେବେ ଆଜ୍ଞା—

ତେବେ କଲି ପୁଚ୍ଛା ମନ୍ଦ ମନ୍ଦ ହାସେ,
ଭଣିଲେ ପୁଣି ସେ ଆଣେର ମୁହାଁସେ ।

"ସେ ମାଷ୍ଟ୍ରଙ୍କ ଝିଅ ଆହା କି ସୁନ୍ଦରୀ !
ଆସିଥିଲେ ତୁମେ ଥିବ ଲକ୍ଷ୍ୟ କରି ।

ହାତେ ବ୍ରୋଂଜ କାଚ ଝଲୁଥିଲ ସ୍ୱଚ୍ଛ,
ଆଣିଦେବ କି ନା କୁହ ଆରେ କସ ?

ଭରିଏ ସୁନାଟି ହେଲେ ଚଳିଯିବ,
କଥା ଦିଅ ଆଗ କଥା ମୋ' ରଖିବ ।

ନହେଲେ ଜାଣିବ ତୁଚ୍ଛା ଏ ସୋହାଗ,
ଲୋକ ଦେଖାଣିଆ ପ୍ରୀତି ଅନୁରାଗ ।"

ମରିଲି, ପଡ଼ିଲି ବିଷମ ଧନ୍ଦାରେ,
ସମ୍ମତି ମୋ' ହେଲି ମାନ୍ଦାରେ ମାନ୍ଦାରେ ।

କିନ୍ତୁ ତାଙ୍କ ମନ ମାନିଲି ତ ନାହିଁ,
ଜିଗର କରିଲେ କଥା ଦେବା ପାଇଁ ।

ମନନ୍ତୁଏ ହାଣି ପ୍ରିୟାବାଣୀ ଶୁଣି,
ହସି ମୁଁ ମୁଣ୍ଡକ ପଡ଼ିଗଲି ତୁନି ।

ଜାଣ ପ୍ରିୟେ କାମ ଶ୍ରେଷ୍ଠ ପେଶତ ମୋ',
ଜଞ୍ଜାଳ ବିଷମ ଆତୁର କଷ୍ଟ ମୋ' ।

ବଞ୍ଚେ କି ପଇସା ଆସେ କି ପେଡ଼ିକ ?
ହୁଅନା ଅଙ୍କଟ ବୁଝେ ସବୁଥିକ ।

ଥସ୍ତ ଧର ଆସୁ ସମସ୍ତ ସହରେ,
ତୁମ କଥା ସବୁ ରଖିବ ଚହିଲେ ।

ତୁମ୍ଭ ବାଣୀ ଧ୍ରୁବ ବକ୍ୟା ମିଳବ,
କିଗର ଧଇଲେ କମିଛ ବା ହେବ ?

ଦିବ୍ୟ ଜୀବନର ବନ୍ଧୁ କହିଗଲେ,
"ଯୋଗ ଦେବ ଭାଇ ! ଆମ୍ଭି ସତ୍‌ସଙ୍ଗରେ ।"

ଦେଶେ ନୁହେ ସାରା ବିଶ୍ୱେ ଅଛୁ ଜଣା,
ଯୁଗ ନିର୍ମାଣ ଯୋଜନା ତନାଧନା ।

ସମସ୍ତ ଦେବାକୁ ମିଶ୍ରଙ୍କର କଥା,
ପାଳେ ମୁଁ ପାଳେନ ଜାଣନ୍ତି ମୋ' କଥା ।

ଘରେ ଫେରୁ ଫେରୁ ପଛ ଆଡ଼୍ ଡାକ,
ମୁହିଁ ଫେଇ ଯେବେ ପଥେ ଗଲି ଥକ ।

ନାପିତ ପିଲାଟା ହସିଲ ମୁଣ୍ଡ଼କ,
ବାକଟା ଦ' ଟଙ୍କା ବୋଲି ତା' ଛଡ଼କ ।

ଘରେ ଆସି ଯେବେ ହୋଇଚି ହାଜର,
ଭାଷିଲେ ପ୍ରିୟା ମୋ' ବାଣୀ ଗରଗର ।

"ଦୋକାମାବାଲ୍ ସେ ଯାହା ଭାଷିଗଲା,
ସାହି ଲେକଙ୍କର ଟାହୁଲା ଟାପରା ।

ଥାଅ ଯେ ଶୁଣିବ କହି କସ ହେବ ?
କହିଲେଛ ମନ ଗିଲା କରିଦେବ ।

କରୁଥ' ଏଥର ନିକ୍ତି ବୁଲ ଚଲ,
ମୋତେ ନେଇ ବାପ ଘରେ ଛୁଡ଼ ଭଲ ।

କିଏ ବା ଶୁଣିବ କାନ ଫାଟିଯିବ,
ଫଟା କପାଳକୁ ହେବ ଯାହା ଥିବ ।

ଦେଇ ଯାଇଛ ଏ ପଚର ଜାବଡା,
ପେଟ ପୂରିଯିବ କରୁଥ' କସରତା ।

ଟିଉସନ ଖଣ୍ଡେ କଲେ କିସ ଲଭ ?
କରନ କରନ ପୈସା ବଂଚାଯିବ ।

ବରଗିବ କାଳେ ଏଠା ସେ'ଠା ଆଣି,
ପ୍ରିୟାମଣି ନୁହେଁ ମୁଁ ତ ଗୋଡାମଣି ।

ଘରେ ଥିବା ନଥିବାର କଥା ମନେ,
ଆଣୁ ନ ଥ ଜମା ନରଖ ତ ଖଣେ ।

ସେଇଁଆଡେ଼ ଯାଅ ଲଗି ରହ ଖାଲି,
ଅଳିଅଳ ତୁମ ପିଲଝିଲ ବୋଲି !

ଘାନଲନ ଧନେ କାଣି କାଣି ଲୋଗୁ,
ଭୁଇଁରେ ଲୋଟେଠ ମୋ' ପିଲା କେତେ ଆଚ୍ଛା—

ଗୁଣ୍ଠି ପରି ମୁହଁ ବାଠି ପରି ହୋଇ,
କାନ୍ଦଇ ବକଳେ ଧଇଁ ସଇଁ ହୋଇ ।

ଲୋଡା ପୁନଅଁ ତ ମାନଲନ କପ,
ରଗିଯିବ ପରକ୍ଷିଲେ ବାଣୀ କପ ।

କାହାକୁ ଦେବ ବା ନଦେବ ଚଛକେ,
ଧୋବୁଣୀ ଆସି ତ ଯିବ ଆଗନ୍ତୁକେ ।

ମାସ ଆଖର ଏ ବର୍ତ୍ତିନ ବର୍ଷର—
ମାଗିବ କନ୍ଦ୍ରଚ ଯୋଗାଡ଼ ନକର ।

ପାଣି ନଦେବାକୁ ଗଉଡ଼ କହିଲା,
ନଦେଲେ ପାଣିର ବାକି ଯାହା ଥିଲା ।

କଲେ କିଏ ପୁଚ୍ଛା ହେବ ଲୋକହସା,
ମାଳି ଶିବନେ ଗଲା ହିଶେ ମୋର ଭୁଚ୍ଛା ।

"କେଉଁ ବ୍ୟାଙ୍କୁ କିସ ଆଣି ନ କହତ,
ଜାଣୁଚ ଏଥର ଯାଉବ ମହତ ।

ଦେଇ ଯାଇଚ ଏ କାଗଜଟା କିସ,
ପଢ଼ି ଶୁଣାଅ ତ ଲେଖାଅଛି କିସ ?"

ପଢ଼ିଲା ଯା' ଅଛି ଲେଖା ତହିଁ ପରେ,
କଳନ୍ତର ଯାହା ନ ବାନ୍ଧିଲେ ବଳେ ।

"ମୂଳେ ମିଶି ହେବ ମୂଳ କଳନ୍ତର,
କମିତ କରୁଚ କରୁଥ ଏଥର ।

କହ ଦେଉଅଛି ଆଜ ଯାହା ଅଛି,
ଶିର ପିଟିଲେ ବି ନଦେବ ମୁଁ କିଛି ।

ଯାହା କଲେ କର ମନ ଇଚ୍ଛା ମତେ,
ଟଙ୍କରିବ ଯଦି ମୋ' କାନରୁ ପଟେ ।"

ଝଡ଼ ବରଷାରେ ପଦଞ୍ଜେ କୁଟୀରେ,
ଟପ ଟପ ପାଣି ଗଳାଚ ସୁପ୍ତିରେ ।

ବହପତର ଯା' ଥିଲା ପାରୁଣରେ,
ଉଡ଼ାଧିକେ ସବୁ ମିଳିଚ ଭିତରେ ।

କାହିଁରେ ନଦେଇ ମୋ' ନଜର କିଛି,
ମୁହିଁମାଡ଼ ମୋର ବସିବା ହୋଇଛି ।

ମନ କରି ଛୁଟି ଛୁଟି ଆସି ନାନା ଚିନ୍ତା,
ପ୍ରିୟା ମୋ' ଭାଷିଲେ "କହୁଥ କବିତା ।

ବାପା କହୁଛନ୍ତି କବିତା, ବନିତା—
ଲତା ଆଶ୍ରୟରେ ସ୍ୱତଃ ଦରିଦ୍ରତା ।

ସେ ଚଣ୍ଡାଳ ବନ୍ଧୁ ଗ୍ରାସିତ ତ ବଳେ,
ଛାଡ଼ ଯା'କୁ ଛାଡ଼ ବିନା ବିଳମ୍ବରେ ।"

ବଡ଼ପୁଅ ମୋର ବଡ଼ ବେପରୁଆ,
ନାମ ଦେଇଛି ମୁଁ ତାକୁ ଅଖାଡୁଆ ।

ରାଗ ରୁଷା ତା'ର ଅଭିମାନ ଛଟା,
ବାବା ବାବା ଡାକ ଗୁଡ଼େ ମୁଣ୍ଡବ୍ୟଥା ।

ପୁଅ ଝିଅଙ୍କର ଗେଲ୍ ଜଲ୍ ଅଳି,
କାନ୍ଦଣା ବୋଲଣା ଅଣ୍ଟ ଅଦ୍ଧଳି ।

ଶିଶୁ ଓଠେ ତାଙ୍କ ସୁକୋମଳ ହସ,
ଟେଗା ଟେଗା ବାଣୀ ଅମୃତ ପରଶ ।

ସହଧର୍ମୀ, ସହଧର୍ମିଣୀ ନୂତନା,
ଯୋଗ୍ୟତମା ମୋର ପ୍ରିୟା ସୁଲୋଚନା ।

ମନ ଜାଣି ଧନ ମିଳାଇର ପରି,
ବନ୍ଧୁଙ୍କ କଟାକ୍ଷେ ନେଇଛି ଆଦରି ।

ମହତ ଉଦାର ପିତା ମହାଶୟ,
ଅଗ୍ରଜ ମୋହର ଅଗ୍ର ପୂଜନୀୟ ।

ଯାଇ ଭାଇ ଯାଙ୍କ ଶିକ୍ଷକ ଶିକ୍ଷିକା,
ଯେତେ ଛନ୍ତି ଭାଇ ଭଉଣୀ ପରିକା ।

ହୋଇଥିବ ସଦା ତାଙ୍କ ହୃଦଗତ,
ମୋ ନେତ୍ରପଥରେ ସାବ୍ ଏ ଜଗତ ।

ଧନ, ଜନ, ଗୋପଲକ୍ଷ୍ମୀ, ଗନ୍ଧାଢର,
ଅକ୍ଷୟ ଭଣ୍ଡାର ଶୋଭା ସମ୍ପଦର ।

ଦୁଃଖ ଶୋକ ଜରା କାତର ବେଦନା,
ମୂର୍ଚ୍ଛ୍ୟ ପ୍ରାଣେ ମୋର ସ୍ପର୍ଶ ସେ କରେନା ।

ଗିରି ଅନ୍ତରକୁ ଭେଦ ବନପଥ,
ଝର ଯେହ୍ନେ ଝର ଫୁଟି ପଡ଼େ ସ୍ୱତଃ ।

ଅନାବନା ତଜ ଗାନେ ବନ୍ଧ ତା'ର,
ଲୋଡ଼ା ଅଲୋଡ଼ାର ନକର ବିଚାର ।

ମୋ କଳ୍ପନା ଝର ସେହି ଅନୁଭବେ,
ଉଦାର ଚିତ୍ତେ କି ନେବେ ସଜ୍ଜନେ ?

ଲେଖାରେ ଫୁଟାଇ ଭାବନା ବିଭୂତି,
ବହାଗ ବିରକ୍ତି ଆଣିଥିବ ଶ୍ରୁତି ।

କେଉଁଠାରେ ଅବା ଭାବ ସମ୍ପୁଟନ,
ହୋଇ ଯାଇଥିବ ଚର୍ବିତ ଚର୍ବଣ ।

ଫୁଟି ଉଠିଅଛି ହୃଦ ଅନ୍ତରାଳୁ,
ମୂର୍ତ୍ତ ଭାବେ ଥିଲା କବା ବନ୍ଧୁକାନ୍ତୁ ।

ଲଙ୍ଘି ବାଧା ପ୍ରତିବାଧା ପ୍ରତିବନ୍ଧ,
ପ୍ରବନ୍ଧ ନାମରେ କଲି ସନ୍ନିବନ୍ଧ ।

ଖେଳିଲି ତରଙ୍ଗ ଭାବନା ଅସରା,
ବାଢ଼ି ଥୋଇଦେଲି ହୃଦୟ ପସରା ।

ବାପ ଘରେ ଥିଲେ ପ୍ରିୟା ମୋ ନବୀନା,
ଅନୁକୂଳ ମଣି ସମୟର ସୀମା ।

ଭାବନା ଆଣିଲ ହୃଦ ମୋ' ଉଗାଳ,
ବିଜନେ ମୁଁ ବସି ତୂଳ ଗୁଳ ଗୁଳ,

ଦିନ ପରେ ସନ୍ଧ୍ୟା ନଇଁ ମାଡେ ରାତି,
ଖଇ ପରି ଭାବ ଫୁଟେ ଫୁଟି ଫାଟି ।

ଘଣ୍ଟା ଡାକ ଆସି କାନେ ବାଜିଲଣି,
ଇସ୍କୁଲ ଯିବାର ବେଳ ଯେ ହେଲଣି ।

ବିଷମ ଜଞ୍ଜାଳ ଗହନ ଭିତରେ,
ଇସ୍କୁଲ ଯିବାର ବେଳରେ କାଳରେ ।

ସମ୍ଭବ ହୁଏନା ଗଣଇ ପ୍ରମାଦ,
ପ୍ରଧାନ ଶିକ୍ଷକ ମୋର ପୂଜ୍ୟପାଦ ।

ମୋ' ଯିବା ପଥରେ ରହିଥିବେ ଚାହିଁ,
ପିଣ୍ଡାରେ ପହରା ମାରୁଥିବେ ଛକି ।

ମୋ' ଯିବା ସଙ୍କେତ ପାଇ ଭିତରରେ,
ପଶି ଯିବେଣି ସେ ଶ୍ରେଣୀ ପ୍ରକୋଷ୍ଠରେ ।

ଅରେ ପଢ଼ ନାନା ବସ୍ତୁର ବିମର୍ଶ,
ତାଙ୍କ ଭୁଲେ ମୋର ଘଟିଲ ସନ୍ଦର୍ଶ ।

ପିଠିପନ ଲେଖା ଭୁକ୍ତା କରାମତି,
ଦେଖାଇଲେ ମୋତେ ନାନା ଭୟ ଭ୍ରାନ୍ତି ।

ଜନ୍ମ ଜାତକେ ଯା' ନାହିଁ ମୋ' ଉଲ୍ଲେଖ,
ବଚନ ଶ୍ରବଣେ ହେଲି ମୁଁ ବିମୁଖ ।

ତଥାପି ସେ ମୋର ପୂଜ୍ୟ, ପୂଜ୍ୟପାଦ,
ମୁଁ ତାଙ୍କ ଅଧୀନ ଉତ୍ତର ବାମ୍ଭାଦ ।

ବ୍ୟସ୍ତ ଟେଣ୍ଡେ ଯାଇ ଜମାଏ ମୋ ଥାନ,
ବଜେ ଥିବେ ବନ୍ଧୁ ସ୍ୱୟଂ ଭଗବାନ ।

କଥା ଦୁଇ ଝୁର ପଦ ଫେଡାଫେଡ଼,
ବାଜିଯାଏ ଘଣ୍ଟା କାଳ ବେଳ ହେର ।

ଯନ୍ତ୍ରାସେ ସଦମ୍ଭେ ହୁଏ ମୁଁ ତ୍ରିବଷ୍ଟ,
ପିଲାଙ୍କ ଗନ୍ଧଲେ ଶ୍ରେଣୀ ସମୁଚିତ ।

ଗଦ୍ୟ, ପଦ୍ୟ, ଗୀତ, ସାହିତ୍ୟ ପ୍ରସଙ୍ଗେ,
ଚୂଲେ ପାଠପଢ଼ା ମୋର ନାନା ରଙ୍ଗେ ।

ହଅ ଗୋଷ୍ଠି ମୋର ହୁଏ ପୁଲକିତ,
ମୁଁ ସାହୁ ମାଷ୍ଟର ନିତ୍ୟ ପରିଚିତ ।

ପ୍ରିୟା ଆସିଯିବେ ବାପଘର ଛାଡ଼ି,
ଏ ସତର୍କ ଘଣ୍ଟି, ଶୁଣେ କାନ ପାରି ।

ସଙ୍ଗତେ ଥିବେ ମୋ' ତନୟା ତନୟ,
ଦର୍ଶନେ ଲଭିବ ଆନନ୍ଦ ଶନ୍ତ୍ରୟ ।

କିନ୍ତୁ ଲେଖା ଆଜି ମୋଟେ ଚଳିବନି,
ରଖେଇ ଦେବେନି ଘରର ଘରଣୀ ।

ଡାକ ଶୁଭୁଥିବେ ଘଣ୍ଟି ଘଡ଼ି କରି,
ତେଲ ନାହିଁ ଲୁଣ ନାହିଁ ସରିସରି ।

ପିଲାଙ୍କ ଅଝଟ ଅଳି ଅରଦଳି,
ଲେଖାର ମୁଅରେ ହେବ ଅରଗଳି ।

ବେଳ ଆଉ ଆଉ ବାନ୍ଧୁଥିବ ବାଳ,
ଲେଖାଥିବ ଚଢ଼ି ଗଡ଼ିଯିବ କାଳ ।
ଛୁଡ଼ି ନିଦ୍ରା ତନ୍ଦ୍ରା ଖିଆପିଆ ଶୋକ,
ଢାଳିଲି ସମସ୍ତ ରକ୍ତ ଅବଶୋଷ ।
ତାର ପୁଣ୍ୟ ଫଳେ ଏଇ ସର୍ଦ୍ଧନାଥି,
କାନ୍ତୁ ଯା' ମୂଳରେ ଦେବୀ ସରସ୍ୱତୀ,
ବକ୍ଷେ କରି ସ୍ୱତଃ ଲେଖି ଦେଉଥିଲେ,
କେମିଓ ମାସକ ମୁଁ ଥିଲି ଗର୍ଭରେ ।
ଅଜ୍ଞାନ-ଅନ୍ଧାର-ତାମସ-ନାଶିନୀ,
ବାକ୍‌ଦେବୀ ହରମ୍ୟ ମରାଳ ବାହିନୀ ।
ତୋ' ପଦେ ମୋହର ନିତ୍ୟ ନିବେଦନା,
ସଦୟେ ମୋ ପଥେ ହେବୁ ସୁପ୍ରସନ୍ନା ।
କରୁଣା ତୋହର ଥିବ ଏ ଅଧମେ,
ତୋ'ର ଶ୍ରୀଚରଣେ କୋଟିବାର ନମେ ।
ଧନ ଧାନ୍ୟମାନ ଗୋପ ବା ଲକ୍ଷ୍ମୀର,
ଭୁଲ ଛୁଆଁ ମୋର ଆନତ କୁଟୀର ।
ନଥାଉ ହୁଅନ୍ତୁ ଲକ୍ଷ୍ମୀ ବିଡମ୍ବନା,
ଦେବୀ ବାଗୀଶ୍ୱରୀ ତୋ' ପଦ ବନ୍ଦନା—
କରୁଥିବ ଧାଉଥିବ ପଦତଳେ,
ଯାବତ ଜୀବନ ଥିବ ଧରାତଳେ ।
ଏଇ କ୍ଷୀଣ ବପୁ ଧରିଥିବ ଯିନା,
ନଥିବ ବକଟେ ଭାବନା ତୋ' ବିନା ।
ଏ ପୋଷାକ ଖଣ୍ଡି ଥିବ କଳେବରେ,
ଏଇ ହାତ ଭୁଲ ଏଇ କଲମରେ—

ଲେଖି ଯାଉଥିବ ଚର ଚର କରି,
ଫିଟୁଥିବ ଝର କବିତା-ସୁନ୍ଦରୀ ।
ସେ ଝରର ଜନ୍ମ ହୃଦ ଅନ୍ତରାଳେ,
ମରମ ବେଦନା ତହିଁରୁ ଓଗାଳେ ।
ସେ ମରମ ଖେଦ ଅପର ଜନର,
ଅନୁଭବ ଲେଖୁଥିବ ଥର ଥର ।
ଜନନେତେ ଆଣି ଥୋଇଦେବ ତାକୁ,
ନଥାନ୍ତି ପଛକେ ତା' ମୂଲ ଦେବାକୁ ।
କୋଟିକେ ଗୋଟିଏ ଚିହ୍ନାରି ଗ୍ରାହକ,
ପାରିଶ୍ରମିକ ତା' ସେଇ ମୋ' ଗୋଟାକ ।
ମନେକର କେଉଁ ସମସ୍ୟା ସ୍ରୋତରେ,
ବାଉଥିବ କାହିଁ ମୋ' କର୍ମ ପୋତରେ ।
ବାଦ ବିସମ୍ବାଦ ବିତ୍ତର-ବିମର୍ଷ,
ଅବା ଘଟି କାଳେ ବିଭେଦ ଅଜସ୍ର ।
ମୋ ଅପାରଗତା ଅବା ଦେଖାଇଣ,
ପେଷିଥିବେ କାହିଁ ହାକିମ ପ୍ରବୀଣ ।
ଉତ୍ତର ନଥାଇ ବଡ଼ଲୋକଠାରେ,
ସ୍ୱର୍ଗକୁ ନିଶୁଣୀ ଛୁଇଁ ଯେ ନପାରେ ।
ପରେ କି ଗୁମାନ ଅରଣ୍ୟ ରୋଦନ,
ରଜା-ପରଜା, ହାକିମ-ଅଧସ୍ତନ ।
ପେଟ ପୋଷା ପାଇଁ ଦୋଷ ନମଣି ମୋ,'
ଶିକ୍ଷକତା ଯେବେ ବେଉସା କଲି ମୋ' ।
ତୁମ୍ଭ ଅନୁଗ୍ରହ ନିର୍ଦ୍ଦେଶନା ପାଇ,
ଶିକ୍ଷକତା ପାଇଁ ଯାଇଥିବ କାହିଁ ।

ଯହିଁ ଗଲେ ମନୁଁ ନକରି ବିଲଗ,
ଲୋଡ଼ୁଥିବ ତା'ରେ କରି ସ୍ମୃତି-ସଙ୍ଗ ।
କହିଯିବ କାନେ ଏତିକି କେବଳ,
ଯେତେ ଥିବେ ତହିଁ ସାଥୀ ସହଚର ।
କିପାଇଁ ଏ ମାନ ଅଭିମାନ ଛଟା,
କିମ୍ପା ତୁରେ ନାଇଁ ମୁଖେ ସୁଖ କଥା ।
ଯୌବନ କି ଜାନେ ବିକଟ କୁହାଟ,
ବୃଥା ଭବରଙ୍ଗ ମାୟା ହାଟ ନାଟ ।
ଶ୍ରୀଅଙ୍ଗ ସୁଖ କି ଶ୍ରୀମୁଖ ଦର୍ଶନ,
ନବଦମ୍ପତିର ପ୍ରେମ ଆଲିଙ୍ଗନ ।
ଭୁଲିଯାଅ କି ସେ କାଳର ଉତ୍ସବ,
କେଉଦିନ ପାଇଁ ଏ ଝଣା ଉତ୍ସବ ?
ରଖିଥିବ ମନେ ବନ୍ଧୁ ସମ୍ବନ୍ଧଦ୍ୱୟ,
କାଳସ୍ରୋତେ ଯେବେ ଭଜିବ ବିଲୟ ।
ଲୋଡ଼ା ନାହିଁ ତୁଚ୍ଛ ଆଡ଼ମ୍ବର ଧନ,
ଚନ୍ଦନ, କୁଙ୍କୁମ, କୁସୁମ, ଚୁମ୍ବନ ।
ଶାନ୍ତ ବିରହିତ କୋଳାହଳ ପୂର୍ଣ୍ଣ,
ଆତସବାଜି ବା ବାଦ୍ୟ ଘଣ୍ଟା ସ୍ୱର ।
ଲୋଡ଼େ ପରିବେଶ ଶାନ୍ତ ସମାଗତ,
ଥିବ ଯେଣୁ ମୁହିଁ ଚିର ନିଦ୍ରାଗତ ।
ବାହ୍ୟ ଆଡ଼ମ୍ବର ଆଟୋପ ଗହନ,
ଜାଣ ଅର୍ଥହୀନ, ଶ୍ରାଦ୍ଧ ଅର୍ଥଶ୍ରମ ।
ଛାଡ଼ିଥିବ ଦେହ ଅଢ଼େଇ ଦିନଆ,
ବୈଦିକ ବିଧାନେ ମୋ ଅନ୍ତ୍ୟେଷ୍ଟି କ୍ରିୟା ।

ହେବ ସମାପିତ ବନ୍ଧୁ ସନ୍ନିଧାନେ,
ମୋ' ଇଚ୍ଛା କେବଳ ଅଭିଷ୍ଟା ସାମାନ୍ୟ ।
ଆବୋଣ ମୋ' ମଡ଼ା ବନ୍ଧୁ ପରିଜନେ,
ନେଉଥିବେ ମୋରେ ଶ୍ମଶାନ ପ୍ରାଙ୍ଗଣେ ।
ଥିବେ ଯଦି କଏ ବନ୍ଧୁ ସନ୍ନିକଟେ,
କହିଦେବ ଟିକେ ବିଦ୍ୟାଳୟ ପଥେ—
ନେବେ ମୋର ମଡ଼ା ବନ୍ଧୁ ପରିଜନେ,
ଏ ଭାବନା ଖେଳେ ବହୁଦିନୁଁ ମନେ ।
ଉଡ଼ାଇବ ମୋର ଗୌରବ କେତନ,
ପଲସର ପ୍ରିୟ ଶିକ୍ଷା ନିକେତନ ।
ମୋ' ପାଇଁ ପରା ସେ ପୁଣ୍ୟ ପୁରୀଧାମ,
ଦେଖିଥିଲି ତା'ର ଦୃଶ୍ୟ ଅଭିରାମ ।
ଲଭି ନେବ ତା'ର ପରଶ ଅନ୍ତିମ,
ଶେଷ ଅବଶୋଷ ମେଣ୍ଟିବ ତହିଁ ମୋ ।
ପ୍ରଧାନ ଶିକ୍ଷକ, ସହକର୍ମୀଗଣ,
ଯେତେ ପୁଣି ଥିବେ ଶିଶୁ ବହ୍ରାଧନ ।
ସାନନ୍ଦ ସକଳ ଆହ୍ଲାଦ ପରମ,
ବରି ନେବ ତାକୁ ଗଙ୍ଗୋଦକ ସମ ।
ତହୁଁ ନେଇ ମୋରେ ଧନେଶ୍ବ ତଳପେ,
ଭସ୍ମ କରିଦେବେ ରୁଦ୍ର ବହ୍ନି ତାପେ ।
ତା' ମାଟି ସଲିଳେ କେଦାରେ ପ୍ରାନ୍ତରେ,
ଗୋଳି ହୋଇ ମିଳିଯିବ କୁତୂହଳେ ।
ତା' ମାଟିରେ ବଢ଼ି ତା' ମାଟିରେ ଲେଉଟି,
ମଣିବ ସାର୍ଥକ ମୋ' ଜୀବନ ଗୋଟି ।

ଲେଖିଛି, ପଢ଼ିଛି ଗାଇ କେତେ ଥର,
ଅଭ୍ୟାସ କରିଛି ସଭା ମଞ୍ଚପର—
ହେବ ଯେତେବେଳେ ମୁଁ ଦଣ୍ଡାୟମାନ—
ମାତ୍ରା ଛନ୍ଦ ଲଘୁ ଗୁରୁ ଉଚ୍ଚାରଣ ।
ସବୁରି ଉପରେ ଦେଇ ମୋ' ଦୃଷ୍ଟି,
ଲୋଚନେ ଆଣିଛି ଏ ସାମାନ୍ୟ କୃତି ।
ଜାଣୁଛି ହେଲଣି ସମୟ ଘଣ୍ଟାଏ,
ଉଣା କି ଅଧିକ ଦଶ ମିନିଟିଏ ।
ସ୍ୱର ବି ମୋହର ହୋଇଲାଣି କ୍ଷୀଣ,
ଅମୂଲ୍ୟ ସମୟ ନଷ୍ଟ କରି ଦିନ ।
ମରମ ଆବେଗ ନ ପାରିଲି ରୋଧି,
ଆଉ ଯଦି କିଛି ଥିବ ବା ଅବଧି ।
ଆଉ ବାରେ ତା'ର କରିବ ତର୍ଜମା,
ବେଳ କରଯୋଡ଼ି ମାଗିନିଏ କ୍ଷମା ।
ମନେପଡ଼େ ଗତ କେନ୍ଦ୍ର ଶ୍ରେଣୀ କଥା,
"ପ୍ରାଥମିକ ଶିକ୍ଷକର ଆତ୍ମଚିନ୍ତା ।
'ପ୍ରବନ୍ଧରେ ରହୁ'—ହାକିମ ନିର୍ଦ୍ଦେଶ,
ଢାଳିଲି ତହିଁରେ ସମସ୍ତ ବିଶେଷ ।
କିନ୍ତୁ ଗଦ୍ୟରେ ନା କରିବି ପଦ୍ୟରେ,
ଚିନ୍ତିଲି ଏକାନ୍ତେ ଲେଖାର ଆଦ୍ୟରେ ।
ମନେ ପଡ଼ିଗଲେ ଉତ୍କଳର ଶ୍ରେଷ୍ଠ,
କବି ଯଦୁମଣି ଭକ୍ତ ସାରସ୍ୱତ ।
କାବ୍ୟ 'ପୂର୍ଣ୍ଣଚନ୍ଦ୍ର ପ୍ରବନ୍ଧ' ତାଙ୍କର,
ହୋଇଛି, ଅପୂର୍ବ ମନୋଜ୍ଞ ସୁନ୍ଦର ।

ପୂର୍ଣ୍ଣଚନ୍ଦ୍ର କାବ୍ୟ ଯେବେକେ ପ୍ରବନ୍ଧ,
ତେବେ କମ୍ପା ଗଦ୍ୟେ ଏ ମୋର ପ୍ରବନ୍ଧ ?
ସହଧର୍ମୀ ଯେବେ ଜୀବନ ଦୀପିକା,
ଯେଉଁ ଦେବୀରେ କରିଚ ଜୀବିକା,
ଯେଉଁ ଶିକ୍ଷାଗତ ଯୋଗ୍ୟତାକୁ ନେଇ,
ଯଦି ଅନୁଭବେ ଅସ୍ୱସ୍ତି ହିଁ ତହିଁ;
କହ କେଉଁଠେ କାଟିନେବ କାଳ ?
ଷଷ୍ଠମ ଷକଠ ଅସାର ସଂସାର ।
ପାର କର ତହୁଁ ବାର୍ଣ୍ଣି ନବାଜନା,
କରିଚ ଏ ମୋର ପଦ ସଂଯୋଜନା,
ଆନନ୍ଦ ବିଷାଦ କିଛି ଜାଣୁ ନାଇଁ,
କାବ୍ୟକତା ତହୁଁ ଫୁଟିବ ବା କାହିଁ ?
ଫୁଟୁ କି ନଫୁଟୁ ଥର ଥର କରି,
ପଢ଼ି ଦେଉଥିଲେ କବିତା-ସୁନ୍ଦରୀ ।
ରସଦାନେ ତାଙ୍କ ଏ ମୋର ଜୀବନ,
ନହେଲେ ମଣନ୍ତି ଜୀବନ୍ତ ମରଣ ।
ଖୋଜିଲେଣି ରବି ଅସ୍ତାଚଳ ଚୂଡ଼ା,
ସମସ୍ତ ହେଲାଣି ଗୋଧନ ବାହୁଡ଼ା ।
ବିହଗ ବିହଗୀ ଫେରିବେଣି ନୀଡ଼େ,
କଳରୋଳେ ନଭେ ଦଳବାନ୍ଧି ଭିଡ଼େ ।
କ୍ଷେତ କାମ ଛାଡ଼ି ଲେଉଟାଣି ବେଳ,
ହେଲାଣି, କୃଷକ କାନ୍ଧେ ଧରି ହଳ—
ଆସି ବସିଥିବ ଦୁଆର ପିଣ୍ଡାରେ,
ଛାନ୍ଦ ଶୁଭିବଣି ଶାସନୀ ଦାଣ୍ଡରେ ।

ମାଆ କା'ର ଡାଣ୍ଡେ ରହିଥିବେ ଚାହିଁ,
ଧନ ନ ଅଇଲ୍ ଏତେବେଳେ କାହିଁ ?
ଧୂଳି ଖେଳ ସାରି ବାହୁତ ସମ୍ଭାର,
ତାଳି ଛୁଡ଼ବେଣି କୁଟୀରେ ମାଆର ।
ନବବଧୂ ମନ ହେବ ଛନ ଛନ,
ଘରେ କୁମ୍ଭ ଘେନି ଟିବେ କି ବନ୍ଦନ !
କୂଳବୋହୂ ଆଜି ଚଣାତ ଜଗ୍ରତ,
ଆରମ୍ଭି ହେବେଣି କଥା ଦୁଇ ଚାର ।
ଦାଣ୍ଡ୍ରୁ ଭାଙ୍ଗବଣି ଗହଳ ଚହଳ,
ରବିକର ଜାଳ କଅଁଳ କଅଁଳ—
ପଡ଼ ଦଶିଲ୍ଣି ଚୂଳୁ, ବସୁନ୍ଧରା,
ହାଟେ କି ହାଟକ ସୁନାର ପସରା !
କନକ ବରଣା କନକ ଭୂଷଣା,
ଧରା ଲେଉଟିବେଣି ସ୍ବପ୍ନରୁ ପ୍ରସନ୍ନା—
ପ୍ରଶାନ୍ତ ଗମ୍ଭୀର ସନ୍ଧ୍ୟା ସ୍ନିଗ୍ଧତା—
ଦେଖାଇ ଝରାଣି କଳାର ଛଇ ତା',
ଚାହିଁ ନିର୍ବିକାରେ କବି କଳାକାର,
ଥୋଇ ଦେଇଥିବ ତଳେ ତୂଳି ତା'ର ।
ଗହନ ତାମସ ମଫସଲ ପଥେ,
ଆସି ଗ୍ରାସିବଣି ସବୁ ଘାଟେ ବାଟେ ।
ଶୁଭିବଣି ପଥେ ଗୋରୁହିଟା ରବ,
ବାଟେ କେ' ବାଟୋଇ ଡାକ ଭୈରବ—
ଏ ବାଟ କି ସେଇ ଗାଆଁକୁ ଚହି ଭାଇ !
ଉଠଇ ଆକାଶ-ପଥ ଜଳି ସହିଁ ।

କେଦାରେ ପ୍ରାନ୍ତରେ ଶ୍ମାନ, ଶିବା ରଡ଼ି,
କାନେ ପଡ଼ିଯିବ ଆସି ଧଡ଼ି ଧଡ଼ି ।
ଝିଲ୍ଲିର ଝଙ୍କାର ଝିଇଁ ଝିଇଁ ଧ୍ୱନ,
ବାଁଶ ବଣୁଁ ଆସୁଥିବ ଘନ ଘନ ।
ନଈ ଝରଣାର କୁଳୁ କୁଳୁ ତାନେ,
ରଚୁଥିବେ ଜଳକ୍ରୀଡ଼ା ମୀନମାନେ ।
ମନ୍ଦେ ମନ୍ଦେ ଫୁଲଗନ୍ଧ ହୁଆ,
ନଥିବ ଶୋଚନା ବକ ଗେଣ୍ଡାଳିଆ ।
ଝାଇ ଫୁଟା ଦରି ଫୁଟି ଗୋଟି ଗୋଟି,
ନଭ-ତାରା ପଂକ୍ତି ଚଢ଼ିଯିବେ ଲେଟି ।
ତରୁ ଲତା କୁଞ୍ଜେ କୁସୁମ ବୀଥିକା,
ମେଲି ଦେଇଥିବେ ଶୋଭାର ପେଟିକା ।
ମଧ୍ୟରେ ହେବଣି ଆରତି ସମୟ,
ଯହିଁ ଦରଶନେ ଭକ୍ତ ସହୃଦୟ,
ଠୁଳ ହୋଇବେଣି ଆସି କେତେ ଜଣେ,
ଘଣ୍ଟି କାମ ଦାମ ଶୁଣି ଦଣ୍ଡାସ୍ୱନେ ।
କିଏ ଅବା ତହିଁ ସୁଦୂର ପ୍ରବାସୀ,
ଭୋଗରାଗ ବସ୍ତ୍ର ବୁଝୁଥିବେ ଆସି ।
କାହୁଁ ଆସୁ ଆସୁ ଗେରୁଆ ଖଳ,
ଦେଖିବ ଯେ ଆଜି ବେଳ ମୋଟେ ନାହିଁ,
କରି ବାଟ ବଣା ଜନ୍ତୁ ବାନ୍ଧ ତା'ର,
ରକ୍ଷା କରୁଥିବ ଫୁଙ୍କି ଚଳି ଜାଳ ।
କନ୍ଧ ସଉରଏ ବନଗିରିମାନେ,
ଅନଳ ଲଗାଇ ଜାଳ ଭୁରିଆଡ଼େ,

ଲେଙ୍କୁଟି ମାଗଣ ନାଚବେଣି ଘେର,
ଧର ବାଦ୍ୟ, ଢ଼ୋଲ, ଘୁଙ୍ଗୁର, ତୂରୀ, ଭେରୀ ।
ସମ୍ପଦ ଭଣ୍ଡାର ତୁମ ଆଶୀର୍ବାଦ,
ଏ ଅଧମ ଯେନ କରଅଛୁ ଶ୍ରାଦ୍ଧ,
ଯେ ଶ୍ରାଦ୍ଧ ନାମରେ ଏ ମୋର ପ୍ରବନ୍ଧ,
ଗଢ଼ି ତୋଳ ଅର୍ପିଦେଲି ସନିର୍ବନ୍ଧ ।
ସତ୍‌ସଦ୍ କର ନିର୍ଦ୍ଧାରଣ ମାନ,
ପଦ୍ୟ ଯଦି ଶ୍ରମ ସାର୍ଥକ ମୋ' ଜାଣ ।
ଆଦ୍ୱର ଯଦି ଏ ପ୍ରବନ୍ଧ ମୋହର,
ଭବବନୋଦିଆ କବି ଭବୁକର—
ରସିକତା ନେଇ ରସ ସମ୍ପୁଟନେ,
ପ୍ରବନ୍ଧର ନାମ ଯଥାର୍ଥୀ କରଣେ,
ସୁନ୍ଦର ନିଖୁଣ୍ଟ ଯଦି ସଜ୍ଜନେ,
ସାର୍ଥକ ବୋଲି ମୋ' ଶ୍ରମ ମୁଁ ମଣେ ।
ପର ଯଦି ମୋର ହୁଅନ୍ତି ଆପଣା,
ଶତ୍ରୁ ଯଦି ମିତ୍ର କର ବୁଝାମଣା,
ହେବେ ନିକଟର ଦୂର ସମ୍ପର୍କୀୟ,
ଆତ୍ମୀୟ ମୋ' ହେବେ ଅତିଷ୍ଠା ଆତ୍ମୀୟ,
ଭେଦାଭେଦ ଭାବ ଯାହାଥିଲେ ଥାଉ,
କିଏ କାହା ପରେ ପାଳ ଥାଉ ଦାଉ,
ଭାଇ ହୁଅନ୍ତୁ ବା ଭଉଣୀ ପଛକେ,
ମୋ ପ୍ରବନ୍ଧ ପଢ଼ା ଶୁଣିବା ମାନଙ୍କେ,
ଯଦି ବା କରନ୍ତି ସବୁ ବିସ୍ମରଣ;
ସାର୍ଥକ ମୋ' ଜାଣ ଶ୍ରାଦ୍ଧ କଲି ଶ୍ରମ ।

ଆଉ କହୁ ବାକ ରହିଗଲା କ ନା ?
ନ ଆସି ଭାବନା ଭାବୁଥିବ ସିନା,
ପ୍ରବନ୍ଧ ଯଦ ମୋ' ସ୍ୱୟଂ ସମ୍ପୂର୍ଣ୍ଣରେ;
ଅଛୁ ସାର୍ଥକତା ମୋ' ପରିଶ୍ରମର ।
ଯଦ ବା ସାର୍ଥକ ଲୋଡ଼ା ପୁରସ୍କାର,
ଏ ସଭାଜନର ସେହି ପୁରସ୍କାର,
ସ୍ନେହ-ସୋହାଗରୁ କଣିକେ ଅମୃତ;
ଶ୍ରୀମୁଖୁଁ ସକଳ ହେଉ ବର୍ଷାଣସୃତ ।
ପଢ଼ା କଲ ମୋର ପ୍ରବନ୍ଧର ନଥି,
ଥିବ ଦୋଷାଦୋଷ ବାଢ଼ିଦେଲ କତ ।
କ୍ଷମ କ୍ଷମାଗୁଣେ ଅଧମ ତନୟେ,
ବର୍ତ୍ତିଶ୍ରୀ ପଦ୍ମରେ ବନ୍ଦେ ସବନୟେ ।

—:୦:—

# ଶୁଦ୍ଧିପତ୍ର

| ପୃଷ୍ଠା ନଂ | ଧାଡ଼ି | ଅଶୁଦ୍ଧି | ଶୁଦ୍ଧି |
|---|---|---|---|
| ୧୧ | ୧୧ | ଭିତରେ | ମୂନରେ |
| ୧୪ | ୭ | ଦେଇ | ହେଉ |
| ୧୯ | ୧୦ | ସବୁଭିଞ୍ଜ | ସବୁରିଙ୍କ |
| ୨୯ | ୧ | ନତ | ମାତ |